## ଶ୍ରୁତି ସଂଜୀବନୀ

ଲେଖକ : ଡ. ଗୋବିନ୍ଦ ଚନ୍ଦ୍ର ଦାଶ



ପ୍ରକାଶକ : ଏଥେନା ବୁକ୍ସ, ଭୁବନେଶ୍ୱର-୨

ଅକ୍ଷରସଜ୍ଜା : ଜି.କେ. ପ୍ରିଣ୍ଟର୍ସ,
ସିଡ଼ିଏ - ୬ ମର୍କତ ନଗର, କଟକ,
ମୋ - ୮୨୪୯୮୧୮୪୧୭

ପ୍ରଚ୍ଛଦ : ଶିଳ୍ପୀ ଶଶିକାନ୍ତ ରାଉତ

ମୁଦ୍ରଣ : ଏଥେନା ବୁକ୍ସ, ଭୁବନେଶ୍ୱର-୨
rkdas.athena@gmail.com

ପ୍ରଥମ ସଂସ୍କରଣ : ୨୦୨୧

ମୂଲ୍ୟ : ଟ. ୧୫୦/-

ISBN : 13 978-93-80824-47-5

# ଅଗ୍ରଲେଖ

ଆମର ସାଂସାରିକ ଜୀବନ ପଥରେ ଆମେ ଅନେକ ପ୍ରକାର ଜଂଜାଳ ସବୁକୁ ସାମ୍ନା କରୁ । ସିଦ୍ଧିର ମାର୍ଗ ଖୋଜୁଖୋଜୁ ବହୁ ସମୟ ବିତିଯାଏ, ହେଲେ କୌଣସି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚି ହୁଏନି । ଜୀବନଯାତ୍ରା ଅସଫଳ ଲାଗେ, ତାକୁ ଏକ ପୂର୍ଣ୍ଣାଙ୍ଗ ରୂପ ଦେବାପାଇଁ ବହୁତ ଗୁଡ଼ିଏ ଚିତ୍ର ଓ ଚରିତ୍ରମାନଙ୍କର ଅନୁଶୀଳନ କରି ଉଚିତ୍ ପଦକ୍ଷେପ ନେବାକୁ ପଡ଼ିଥାଏ । ଆଧ୍ୟାତ୍ମିକ ମାନସିକତା ଓ ଭାବଜଗତରେ ମୋର ଅନୁଭୂତି ଓ ଅଭିଜ୍ଞତାସମ୍ପନ୍ନ ସଂସ୍କାର ଓ ସଂସ୍କୃତି ଭିତରୁ ଚେତନାଦୀପ୍ତ ପ୍ରାଣମୟ ଆତ୍ମୀୟତା ଓ ଅନ୍ତରଙ୍ଗତାର ପୃଷ୍ଠଭୂମି ଉପରେ ଆଧାରିତ କବିତାଗୁଡ଼ିକ ରଚନା କରିବାରେ ମୁଁ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରିଛି । ଜଣେ ସାଧାରଣ ମଣିଷ ଭାବରେ ମୁଁ ସମାଜରେ ସମସ୍ତଙ୍କ ଭିତରେ ନିବିଡ଼ଭାବେ ସୁଖ ଓ ଆନନ୍ଦ ବାଣ୍ଟିବାକୁ ମୋର ପ୍ରୟାସ ଜାରି ରଖି କବିତା ମାଧ୍ୟମରେ ଏକ ନୈସର୍ଗିକ, ନିଆରା ପରିବେଶ ସୃଷ୍ଟି କରିବାରେ ଯତ୍‌ପରୋନାସ୍ତି ଚେଷ୍ଟା କରିଆସିଛି । ମହାର୍ଘ ଜୀବନରେ ହସ ଓ ଖୁସିର ଅପୂର୍ବ ଆଭାଯୁକ୍ତ କମନୀୟ ଅମୃତର ଭାବଧାରା ଗଢ଼ିତୋଳେ ସଂପର୍କର ଏକ ସୁକୁମାର ସୌଧ ଯାହାକି ନିଶ୍ଚିତଭାବରେ ଅଜସ୍ର ଅଶାନ୍ତି, ଦୁଃଖ, ଦୁଃଶ୍ଚିନ୍ତା, ନୈରାଶ୍ୟ ଆଦିରୁ ସମାଜକୁ ରକ୍ଷା କରେ ।

ଏଥିରେ ସନ୍ନିବେଶିତ ପ୍ରତ୍ୟେକଟି କବିତା ରଚନା କରି ସମାଜର ସଂସ୍କାରମୁଖୀ ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ କରିବାକୁ ଆପ୍ରାଣ ଚେଷ୍ଟା କରିଛି । ଶବ୍ଦଗୁଡ଼ିକର ଏକ ବାଙ୍ମୟ ଆବେଗ ଭିତରେ ଅଥୟ ଅଧୀର ହୋଇ ସୁଖ, ଦୁଃଖ, ହସ, କାନ୍ଦ, ଜୟ, ପରାଜୟ, ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି, ଦିନ, ରାତି ଆଦି ଅବସ୍ଥା ସବୁର ରୂପରେଖ ସୃଷ୍ଟି କରିଛି ମୋର ଭାବନା ରାଜ୍ୟରେ ଏକ ପ୍ରାଣବନ୍ତ ପ୍ରତିବେଦନ ।

ହୃଦୟ ଦର୍ପଣରେ ପ୍ରେମ, ସତ୍‌ଚିନ୍ତା ଓ ସଦ୍‌ଭାବନାର ପ୍ରଲେପ ଦେଇ ସମାଜରେ ସମସ୍ତ ଦୁଃଖୀ, ଅସହାୟ ମଣିଷମାନଙ୍କ ମନରେ ସହସ୍ର ସମ୍ଭାର ହସର ପ୍ରତିବିମ୍ବ ସୃଷ୍ଟି କରିବାରେ ସମର୍ଥ ହେଲେ ମୁଁ ନିଜକୁ କୃତାର୍ଥ ମନେକରିବି । ମୋ ପରିବାରର ପ୍ରତିଟି ସଦସ୍ୟ ମୋର ଏହି ସାରସ୍ୱତ ସାଧନାରେ ମୋତେ ଅଗ୍ରସର ହେବାକୁ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ଯୋଗାଇଦେଇଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ପୁସ୍ତକର ପ୍ରକାଶକ ଏଥେନା ବୁକ୍‌ସର ଶ୍ରୀଯୁକ୍ତ ରାଜକିଶୋର ଦାସଙ୍କ ଅଯାଚିତ ସାହାଯ୍ୟ ସହଯୋଗ ଏହାକୁ ଏକ ପୂର୍ଣ୍ଣାଙ୍ଗ ରୂପ ଦେଇଛି । ତେଣୁ ତାଙ୍କୁ ଅନ୍ତରରୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି । ପାଠକ, ପାଠିକାମାନଙ୍କର ସୁଚିନ୍ତିତ ମତାମତକୁ ଅପେକ୍ଷା କରିଛି । ସେମାନଙ୍କର ହୃଦୟ ଜିଣିପାରିଲେ ଶ୍ରମ ସାର୍ଥକ ହେବ ବୋଲି ଆଶା ଓ ବିଶ୍ୱାସ ।

ଜୟ ଜଗନ୍ନାଥ !

ରାମ ନବମୀ
ତା ୨୧.୪.୨୦୨୧

**ଗୋବିନ୍ଦ ଚନ୍ଦ୍ର ଦାଶ**

# ସୂଚୀ

# ଧାଡ଼ି

ଲଂବା ଧାଡ଼ିଟିଏ
ଲଂବିଛି କାହିଁ କେତେ ଦୂର
ଆଖି ପାଉନି
କେଉଁଠୁ ଆରମ୍ଭ ପୁଣି କେଉଁଠାରେ ଶେଷ ॥

ରୋଗୀ, ଭୋଗୀ, ରାଗୀ, ବୈରାଗୀ
ରାଜା, ପ୍ରଜା ଆବାଳବୃଦ୍ଧବନିତା
ସମସ୍ତେ ସେଇ ଧାଡ଼ିରେ
ଆଗପଛ ହୋଇ
କାଳର କବଳରେ ଜିଇଁ
ଅପେକ୍ଷା ରତ ସେଇ ମୁହୂର୍ତ୍ତକୁ,
ଯିଏ ଡାକରା ନଦେଇ
ଆସେ ସଙ୍ଗୋଳି ନେବାକୁ ॥

୦ ୦

# ସତ୍ୟ

ତୁମର ଉପସ୍ଥିତି
ମୋର ଅନୁଭବରେ ଆସୁ
ମୋ ଦେହରେ ମନରେ
ସଂଚରି ଯାଉ ଓ
ସାଇତାହୋଇ ରହୁ ଶେଷ ପର୍ଯ୍ୟନ୍ତ
ଯାହା ସହିତ ଦେଖାହୋଇ ନାହିଁ
କେବେ, ସିଏ କିନ୍ତୁ ସତ୍ୟ
ଦିନେ ନା ଦିନେ ଆସିବ
ଏ ସତ୍ୟ ବି ବଂଚିରହୁ
ମୋ ଭିତରେ ଶେଷଯାଏଁ
ଦୁଇଟି ସତ୍ୟ ଭିତରେ
କଟିଯାଉ କାଳକାଳ,
ଯେମିତି ଦିନର ସକାଳ
ଓ ରାତିର ସଂଜବେଳ ॥

୦ ୦



# ମଣିଷ

ନିରୀହ ନିଷ୍ପାପ ଶିଶୁ
ଦୁନିଆକୁ ଚିନ୍ହିନି
ହାତରେ ଖେଳନା
ଆଖିରେ ଦୁଷ୍ଟାମି
ଖେଳ ବୁଲ ଭିତରେ ଲଢ଼େଇ
ଆଉ ଏକ ସାଥୀସହ
ଏଇନା କାନ୍ଦ
ଆଉ ଟିକକରେ ହସଖୁସି, କୋଳାକୋଳି
କେତେ ଭଲ ହୁଅନ୍ତା
ମଣିଷଟିଏ ଯଦି ବଂଚିରହନ୍ତା
ଶିଶୁଟିଏ ପରି,
ଯେତେ ସବୁ ରାଗ, ରୋଷ
ମାନ, ଅଭିମାନ, କଳିଗୋଳ ଆଦିକୁ
ଦିଅନ୍ତା ପାଶୋରି ॥

○ ○



# ଖଳ

ସର୍ପଟିଏ ବିଷଧର
ତା' ଠାରୁ ଅଧିକ ବିଷଧର
ହେଉଛି ଖଳ ଲୋକଟି
ସାଂଗ ସାଥୀ ଜ୍ଞାତି ପରିଜନ
ତା'ର ଦୌରାତ୍ମ୍ୟରେ ଅତିଷ୍ଠ ହୁଅନ୍ତି,
ଖୁଅ ଖୋଜି କଳି କରିବାରେ
ସେ ପାରଙ୍ଗମ
ସମସ୍ତେ ତେଣୁ ଦୂରୁ ତାକୁ
ଜୁହାର କରନ୍ତି ॥

ଯେତେବଡ଼ ବିଷଧର ସର୍ପ
ହେଉନା କାହିଁକି
ଫଣାଟେକି ଖେଳେ
ପଦ୍ମତୋଳା ବି' ପଦ ଶୁଣିଲେ
ମନ୍ତ୍ର ଦ୍ୱାରା ହୁଏ ବଶୀଭୂତ,

ବୋଲ ମାନେ ସମସ୍ତଙ୍କୁ କରି
ଆଶ୍ଚର୍ଯ୍ୟ ଚକିତ ॥

ଖଳ ବୋଲ ମାନେନି
ପଦ୍ମତୋଳା ତା'କୁ କାଟୁ କରେନି
ନାନାଦି ଦୁଷ୍କର୍ମରେ ଲିପ୍ତରହେ,
ସବୁଦିନ ପାଇଁ ଦୁନିଆ ଆଖିରେ
ସିଏ ଅପରାଧୀ ଟିଏ ॥

୦ ୦

## ଯୁକ୍ତି

ଦେହରେ ନାହିଁ ନଥିବା ଶକ୍ତି
ସବୁ ଶକ୍ତି ଖର୍ଚ୍ଚ ହେଉଛି
ଯୁକ୍ତି ତର୍କରେ, ବିବାଦକୁ ଟାଣି ଆଣୁଛି,
ସଂପର୍କରେ ତିକ୍ତତା ଓ
ଆନ୍ତରିକତାରେ ବିଭେଦତା
ସୃଷ୍ଟି କରୁଅଛି ॥

ତ୍ୟାଗରେ ଥାଏ ଭୋଗ
ଶ୍ରଦ୍ଧା, ବିଶ୍ୱାସ ଓ ବନ୍ଧୁତ୍ୱର ପ୍ରତୀକ
ତ୍ୟାଗ ହେଉଛି ସମାଧାନର ସୂତ୍ର
ଏଇ ଯେମିତି ଶାଶୁ ବୋହୁ
ଭିତରେ ମନାନ୍ତର
ଶାଶୁ କହୁଛି କାହିଁକି ତ
ବୋହୁ କହୁଛି କାହିଁକି ନୁହଁ
କାହାକୁ ଜଣକୁ ହେଲେ
ମୁଣ୍ଡ ନୁଆଁଇବାକୁ ପଡ଼ିବ,

ବିବାଦ ଆପଣାଛାଏଁ
ଛାଡ଼ି ପଳାଇବ ॥

ତ୍ୟାଗର ସୁଖ ଯୁକ୍ତିରେ ମିଳେନି
ଯିଏ ଯେତେ ତ୍ୟାଗ କରେ
ସିଏ ସେତେ ଭୋଗ କରେ
ଯୁକ୍ତି କରେ ବିବାଦୀୟ
ଯେତେ ସମ୍ଭବ ତାକୁ ପରିହାର କର,
ସୁଖରେ ହସିବ ସଂସାର ॥

୦ ୦

# ଲୋଭ

ଜୀବ ଥିବା ଯାଏଁ
ଲୋଭ ଅଛି, ସିଏ ବଂଚିବାର ହେଉ
କି ସଂଚିବାର ହେଉ
ଲୋଭ ଗ୍ରାସକରେ ସମସ୍ତଙ୍କୁ
ଛଟପଟ କରେ ଦେହକୁ, ମନକୁ
ଓ ନିଜର ଦୁର୍ବଳ ମାନସିକତାକୁ ।।

ଲୋଭ ବଳାଏ ପାପ କରିବାକୁ
ନକଲା କର୍ମ ସବୁ ହାତ ଠାରି ଡାକେ
ବିବେକ ବି ହାର୍ ମନେ ପାପ ପାଖରେ
ଟାଣିନିଏ ବିନାଶ ଆଡ଼କୁ,
ନିଜ ହାତରେ ଗଢ଼ିଥିବା
ନିଜ ସଂସାରକୁ ନିମିଷକେ ଉଜାଡ଼ି ଦେବାକୁ ।

ଧନଲୋଭ ଠାରୁ ଆହୁରି ଭୟଙ୍କର କ୍ଷମତାର ଲୋଭ
ମଣିଷକୁ ଅଂଧକରେ
କିଛିକାଳ ପାଇଁ
ଚଉକିର ମୋହ ବାଂଧିରଖେ

ତାଙ୍କୁ ଅହଂକାରର ବଂଦୀଘରେ,
ମୁଁ ଓ ମୋର ସଂଚରିଯାଏ
ଦେହରେ, ମନରେ, ସାରା ଶରୀରରେ ॥

କାମନାରେ ବଶବର୍ତ୍ତୀ ଚିତ୍ତ
ଲୋଭର ମୋହ ଜାଲରେ
ଅସ୍ତବ୍ୟସ୍ତ ହୁଏ,
ଅଜ୍ଞାନର ଅଂଧକାରରେ
ବିଚରଣ କରି ପଦାର୍ଥ
ଓ ଭୋଗ ପ୍ରତି ଆସକ୍ତି ବଳାଏ ॥

କାମ ଓ କ୍ରୋଧ ଭଳି
ଲୋଭ ବି ଏକ ନରକର ଦ୍ୱାର,
ଏହା ଜୀବାତ୍ମାକୁ ହନ୍ତସନ୍ତ କରେ
ଯେତେ ଶୀଘ୍ର ପାର
ଏହାକୁ ପରିହାର କର ॥

୦ ୦

# ଶ୍ରଦ୍ଧା

ଶ୍ରଦ୍ଧାରେ କିଏ କିଛି ଯାଚିଲେ
ମନା କରି ହୁଏନି
ଭାଂଗି ଯାଇଥିବା ମନ ପୁଣି
ଯୋଡ଼ି ହୋଇଯାଏ,
ଯିଏ ଯେତେ ଶତ୍ରୁ ହେଲେବି
ଶ୍ରଦ୍ଧା ତାକୁ ନିମିଷକେ
ମିତ୍ର କରିଦିଏ ।।

ଶ୍ରଦ୍ଧା ହେଉଛି ଅନ୍ତଃକରଣର
ଏକ ଅନୁରୂପ
ଯେ ଯେପରି ଶ୍ରଦ୍ଧାବାନ୍
ତା'ର ସେପରି ସ୍ୱରୂପ
କର୍ମରେ ନିଷ୍ଠା ତା'ର ସେହିପରି,
ସମସ୍ତେ ତାହାର ମିତ୍ର
ଶତ୍ରୁ କେହି ନାହାନ୍ତି ତାହାରି ।।

ଶ୍ରଦ୍ଧା ଜାତ ହୁଏ ସ୍ୱଭାବରୁ
ସାତ୍ତ୍ୱିକ ଭାବ ଭରା ଶ୍ରଦ୍ଧା

ଲୋଡ଼ାହୁଏ ଶ୍ରାଦ୍ଧବିଧି ସମ୍ମତ
କର୍ତ୍ତବ୍ୟ କର୍ମ କରିବାରେ,
ଶ୍ରଦ୍ଧାଶୀଳ ବ୍ୟକ୍ତିଟିର
ମନବାଞ୍ଛା ପୂର୍ଣ୍ଣ ହୁଏ
ପରମେଶ୍ୱରଙ୍କୁ ଭକ୍ତି ଅର୍ଘ୍ୟ
ସମର୍ପି ଦେବାରେ ॥

ଶ୍ରଦ୍ଧାଯୁକ୍ତ କର୍ମରେ
ସିଦ୍ଧି ଆସିଥାଏ
ଅହଂଭାବକୁ ଶ୍ରଦ୍ଧା
ଦୂର କରିଦିଏ
ବୁଦ୍ଧି କେଉଁଥିରେ
ଲିପ୍ତ ହୁଏ ନାହିଁ,
କର୍ମ ବଂଧନକୁ ସହଜରେ
ହୁଏ ବି ଏଡ଼ାଇ ॥

ଯେଉଁଠି ଶ୍ରଦ୍ଧା ନାହିଁ
ସେଠି ଲୋକଦେଖାଣିଆ
ଶ୍ରାଦ୍ଧ କ'ଣ ପାଇଁ ?
ସେ ହିଁ ସଫଳ ବ୍ୟକ୍ତି ଯିଏ ଶ୍ରଦ୍ଧାକୁ ସଦା
ଥାଏ ଆପଣାଇ ॥

ଠ ଠ

# ଲାଜ

ଲାଜରେ ମୁହଁ ଝାଉଁଳି ଯାଏ
ମନରେ ଉକୁଟୁ ଥିବା
ଅକୁହା କଥାମାନ
ଆପେ ଆପେ କହି ହୋଇଯାଏ ॥

ଲାଜ ଏକ ସଂଗୋପିତ ମନର
ସବୁଜ ଇସ୍ତାହାର,
ଗ୍ଧତକ ଭଳି ଗ୍ଧହିଁ ରହିଥିବା
ଚିଠିରେ ପ୍ରେମିକାର ଗୋଲ ଗୋଲ
ସୁନ୍ଦର ହସ୍ତାକ୍ଷର ॥

ଲାଜ ସରସର ଦେହଟା ଠିକ୍
ଏକ ଲାଜକୁଳୀ ଲତାପରି
ଆଖି ଦି'ଟା ସବୁ ଦେଖୁଥାଏ,
ସମୟ ଆସିଲେ କିଛି ନଦେଖିଲା ପରି
ବୁଜି ହୋଇଯାଏ ॥

ଅଳଙ୍କାର ଭଳି ନାରୀଟିଏ
ଲାଜରେ ନିଜକୁ ସଜେଇ ଦିଏ,
ମନଲୋଭା ରୂପ ସମ୍ଭାରରେ
ନିଜକୁ ହଜେଇ ଦିଏ ।।

ଲାଜ ମିଶା ହସ
ଲାଜୁଆ ଲାଜୁଆ ଆଖି
ଲାଜଲାଜ ଓଠ
ଏକ ଉତ୍‌ଫୁଲିତ ମନରେ
ପରିତୃପ୍ତିର ସୁଦୀର୍ଘ ପାହାଚ,
ଝରି ଆସୁଥିବା ଝରଣାର
ଜଳପରି ସୁନୀଳ ଓ ସ୍ୱଚ୍ଛ ।।

ଲାଜ ନଥାଇ ଲାଜେଇଲେ
ଫଟା ମୁରୁଦଙ୍ଗ ବଜାଇଲା ଭଳି
ଆହାର ଓ ବ୍ୟବହାରରେ ଲାଜକଲେ
ଅବସ୍ଥା ଅଣାୟତ ହୁଏ,
ଆଶାର ପ୍ରଦୀପଟି
ଜଳି ନ ରହି ଧୀରେଧୀରେ
ଲିଭି ଲିଭି ଯାଏ ।।

୦ ୦

# ଇଚ୍ଛା

ପ୍ରବଳ ଇଚ୍ଛା ଶକ୍ତିରେ ବଂଧା ମଣିଷଟି
ସବୁଥିରେ କୃତକାର୍ଯ୍ୟ ହୁଏ,
ଇଚ୍ଛାକୁ ସମ୍ମାନ ଜଣାଇ
ନହେବା କାର୍ଯ୍ୟକୁ ବି
ସହଜରେ କରି ଦେଇଥାଏ ।।

ଇଚ୍ଛାର ଉପଦ୍ରବରେ
ଇନ୍ଦ୍ରିୟ ହୁଏ ବଶୀଭୂତ
ନକଲା କର୍ମ ସବୁ କରିବାକୁ ପ୍ରବର୍ତ୍ତାଏ,
କର୍ମ ସଂପାଦିତ ନହେଲେ
ଶରୀରରେ କ୍ରୋଧ ଉପୁଜାଏ ।।

ଇଚ୍ଛାଥିଲେ ଉପାୟ
ବଳେବଳେ ଆସେ
ଇଚ୍ଛାର ଇଲାକାକୁ ସଂଜମତାର
ଚାଦରରେ ଘୋଡ଼ାଇବାକୁ
ଚେଷ୍ଟାକଲେ ବି ଉପାୟ

ସହଯୋଗରେ ତାହା
ସହଜରେ ଖୋଲିଯାଏ,
ଇଚ୍ଛା ହୁଏ ଫଳବତୀ,
ଉପାୟର ଅଶେଷ ଶକତି ॥

ବେଳେବେଳେ ଏମିତି ବି ହୁଏ
ମନଇଚ୍ଛା କାର୍ଯ୍ୟକଲେ
ବ୍ୟକ୍ତିଟିର ଅନେକ ଅସୁବିଧା ହୁଏ,
ମନରେ ଲାଗିଥିବା ଲଗାମ୍‌ଟି
ଛିଡ଼ି ଛାଡ଼ି ଯାଏ ॥

ଇଚ୍ଛାକୁ ଠିକଣା
ଭାବରେ ନିୟନ୍ତ୍ରଣ କର,
ଜୀବନ ସାର୍ଥକ ହେବ
ଭଲ ମଂଦ କରିଲେ ବିଚାର ॥

୦ ୦

# ବିଷ

ଦେବା ନେବାର ଦୁନିଆରେ
ଦେବାଠାରୁ ନେବା ଲୋକ ଆଗେ,
ସେଥିପାଇଁ ବେଳେବେଳେ
ଜୀବନଟା ବିଷମୟ ଲାଗେ ॥

ସାପ ଦାନ୍ତରେ ବିଷ ଥାଏ
ମାଛିର ମୁଣ୍ଡରେ ବିଷ
ବିଷଥାଏ ଲାଞ୍ଜରେ ବିଛାର,
ଦେହସାରା ମନସାରା
ବିଷ ଭରି ରହିଥାଏ ଖଳ ଲୋକଟିର ॥

ଉପରେ ଭଲ କଥା କହି
ଭିତରେ ଚେର କାଟୁଥିବା
ବ୍ୟକ୍ତିଟି ବିଷ କୁମ୍ଭ ପୟୋମୁଖ ଭଳି,
ଟୋପାଏ ବିଷରେ ବି
ଅମୃତ ଭାଣ୍ଡଟି ଯାଏ ବିଷରେ ବଦଳି ॥

କଣ୍ଟାକୁ କଣ୍ଟାକାଢ଼େ,
ଚୋରକୁ ଚୋର ଧରିବା ନୀତିରେ
ବିଷକୁ ବିଷ ନଷ୍ଟ କରେ
ସେଠି ବିଷ ହୋଇଯାଏ ଅମୃତ,

ଜୀବନରକ୍ଷାକାରୀ ଔଷଧରେ ବି
ବେଳେବେଳେ ବିଷ ହୁଏ ବ୍ୟବହୃତ ॥

ଶାସ୍ତ୍ର ଅଭ୍ୟାସ ନକଲେ
ସିଏ ବିଷ ସଦୃଶ
ଅଜୀର୍ଣ୍ଣ ଅବସ୍ଥାରେ
ଭୋଜନ ବି ହୋଇଯାଏ ବିଷ
ଦରିଦ୍ର ଲୋକଟି ପାଇଁ
ସଭାସମିତି, ମେଳା ମଉଛବ ବିଷ ଭଳି,
ବୃଦ୍ଧ ଲୋକଟି ପାଖରେ
ତରୁଣୀ ଯେପରି ॥

ଚନ୍ଦନ ବନରେ ସାପ ରହେ
ହେଲେ ବିଷ ହୁଏ ନାହିଁ ଚନ୍ଦନ,
ସଂସାର ଭିତରେ ଖଳ
ଲୋକଟିଏ ବି ଥାଏ
ସିଏ କିନ୍ତୁ ପାଏ ନାହିଁ
ସୁଖର ସନ୍ଧାନ ॥

କାହାକୁ ବି ଦେଖନି
ବିଷ ଦୃଷ୍ଟିରେ
ଜୀବନରେ ପାଇବନି ଶାନ୍ତି,
ହତାଦର କରନି କାହାକୁ
ବିଷମୟ ହେବ ପରିଣତି ॥

୦ ୦

# ଭାଗ୍ୟ

ଭାଗ୍ୟଗଢ଼େ ଭବିଷ୍ୟତ
ଏ ଧାରଣା ଉଣାଅଧିକେ ସମସ୍ତଙ୍କର,
ଭାଗ୍ୟ ବସେଇ ଦିଏ କାହାକୁ
ରାଜଗାଦିରେ ତ ପୁଣି କାହାକୁ
କରିଦିଏ ଦାଣ୍ଡର ଫକୀର ।।

କଥା କଥାକେ ଭାଗ୍ୟକୁ
ଦୋଷ ଦେଉଥାଏ କାପୁରୁଷ
ଅନ୍ୟ ଉପରେ ନିର୍ଭର
କରୁଥିବା ବ୍ୟକ୍ତିଟି
ସବୁବେଳେ ଭାଗ୍ୟକୁ ନିନ୍ଦୁ ଥାଏ,
ପ୍ରତ୍ୟେକ ଅସଫଳ ମୁହୂର୍ତ୍ତକୁ
ଭାଗ୍ୟ ବେକରେ ଝୁଲେଇ ଦେଇ
ବାସ୍ତବତାରୁ ଓହରିଯାଏ ।।

କେତେକ କହନ୍ତି
ଭାଗ୍ୟ ସବୁଠାରେ ଫଳେ
ବିଦ୍ୟା କି ପୌରୁଷ ତା' ଆଗେ

ତୁଚ୍ଛ ମନେହୁଏ
ଭାଗ୍ୟ ଦୋଷେ ରାଜା ବି ଘାସ କାଟେ,
ଭାଗ୍ୟର ବିଡ଼ମ୍ବନାରେ
ସୁନା ବି ପଥର ପାଲଟେ ॥

ଭାଗ୍ୟ ଓ ଭବିଷ୍ୟକୁ ନେଇ
ଟିଭି ପରଦାରେ ଅନେକ
କିଛି ଖେଳ ପ୍ରତିଦିନ
ଆଖିରେ ପଲକ ପଡ଼େନି
ଅନେକେ ଚାହିଁ ରହିଥା'ନ୍ତି
ସେଇ ପ୍ରତିକ୍ଷିତ ବେଳାକୁ,
କେମିତି ଟିକେ ଶୁଣିବେ
ଆଗକୁ ଦେଖାଯାଉ ନଥିବା
ସଫଳ ସମୟ ସବୁକୁ ॥

ନିଜ ଭାଗ୍ୟକୁ ଗଢ଼ିବା
ନିଜ ହାତରେ ହିଁ ଥାଏ,
ଉଦ୍‌ଯୋଗୀ ବ୍ୟକ୍ତିଟି
ନିଜ ଭାଗ୍ୟକୁ ନିନ୍ଦେନି
ବରଂ ସବୁବେଳେ ସବୁକର୍ମରେ
ସଫଳତା ପାଏ ॥

୦ ୦

# ଦାନ

ଦାନ ଧର୍ମରେ ଧନ୍ୟ ହୁଏ ଜୀବନ
ଦାନ ନ ଥିଲେ ପୁଣ୍ୟ ନାହିଁ,
ପୁଣ୍ୟ ନଥିଲେ ଏ
ଜୀବନ ଜିଇଁବା ଆମେ କାହାପାଇଁ ? ॥

ସତ୍‌ପାତ୍ରରେ କରାଯାଏ ଦାନ
କିଛି ଉଦ୍ଦେଶ୍ୟ ରଖି
ଦାନକଲେ ତାହାହୁଏ ନିରର୍ଥକ,
ଲୋକ ଦେଖାଣିଆ ଦାନକଲେ
ଜୀବନ ହୁଏନି ସାର୍ଥକ ॥

ସବୁଠାରୁ ଶ୍ରେଷ୍ଠ ଦାନ ହେଲା
ଅନ୍ନଦାନ, ଯେକୌଣସି
ଦାନରେ ଅଣ୍ଟି ପୁରେ ନାହିଁ,
କିଂତୁ ପେଟଥରେ ପୁରିଗଲେ
ଆଉ ଅନ୍ନକୁ ଆଶା ବଳେ ନାହିଁ ॥

ନିଜେ ଅର୍ଜିଥିବା ଧନକୁ ଦାନକଲେ
ଧନର ହୁଏ ସତ୍ ବିନିଯୋଗ,

ପରଧନରେ ପୁଣ୍ୟ ଅର୍ଜିଲେ
ସେ ପୁଣ୍ୟ ହୁଏନାହିଁ ଭୋଗ ।।

ସଂସାରରେ ଯିଏ କରେ ବିଦ୍ୟାଦାନ
ସିଏ ନିଶ୍ଚିତ ଭାବରେ
ଜଣେ ମହତ୍ ଜନ
ତା' ଠାରୁ ବଳି ସୁଖୀ କିଏ ନାହିଁ,
ମୃତ୍ୟୁପରେ ବି ସେ
ସବୁରି ହୃଦୟରେ ଥାଇ ।।

ଏ ଜୀବନ ଅଟେ କ୍ଷଣସ୍ଥାୟୀ
କର ଉତ୍ସର୍ଗ ପର ପାଇଁ
ପରକୁ ଆପଣାର ମଣ
ଯେତେ ପାରୁଛ କର ଦାନ
ଯେ ଯେତେ ପୁଣ୍ୟ ଅରଜଇ
ସେ ଜନ ବୈକୁଣ୍ଠେ ବସଇ ।।

୦ ୦

# ଗର୍ବ

ଧନ ନାହିଁ କି ଯୌବନ ନାହିଁ
ଗର୍ବ ବା କରିବି କାହା ପାଇଁ
ମୂର୍ଖ ମଣିଷ ଜାଣିପାରେନି
ଧନ କି ଯୌବନ ସ୍ଥାୟୀ ନୁହେଁ ବୋଲି
ଗର୍ବରେ ଛାତି ଫୁଲାଇଥାଏ,
କାଳ ଯେ କଉଶଳେ ସେ ସବୁକୁ
ହରିନେବ ଦିନେ, ସେ କଥାକୁ
ସିଏ ଭୁଲିଯାଇଥାଏ ।।

ଗର୍ବ ଆସେ ମନରେ
ଯେତେବେଳେ ଇପ୍‌ସିତ
ଇଚ୍ଛାସବୁକୁ ବ୍ୟକ୍ତିଟି ଅକ୍ଳେଶରେ
ପୂର୍ଣ୍ଣ କରିପାରେ
ଗର୍ବରେ ଛାତି କୁଣ୍ଢେମୋଟ ହୁଏ
ଯେତେବେଳେ ସିଏ ପରିଚିତ ହୁଏ
ତା' ପିଲାମାନଙ୍କ ଦ୍ୱାରା
ସେମାନଙ୍କ ପାରିଲା ପଣରେ,

ସଂଗୀତ, କଳା, ସାହିତ୍ୟ
କିଂବା ଯେ କୌଣସି ଗୋଟିକର
ପାରଦର୍ଶିତାରେ ।

ଗର୍ବର ମାତ୍ରା ବଢ଼ିଗଲେ
ବ୍ୟକ୍ତିଟିର ପତନ ଆସେ
ଯେଉଁ ଜିନିଷକୁ ନେଇ
ଗର୍ବ କରେ ସିଏ,
ଯେହୁଁଯେହୁଁ କେତେବେଳେ
ଅଜାଣତେ ସେ ସବୁ
ତା' ହାତରୁ ଖସି ଚାଲିଯାଏ ॥

ଧନ୍ୟ ହୁଏ ଦେଶ
ଧନ୍ୟ ପିତାମାତା
ଯିଏ ଆଣିଛନ୍ତି
ଏ ଧରିତ୍ରୀକୁ ସହିଦ୍‌ମାନଂକୁ
ଦେଶପାଇଁ ଜାତିପାଇଁ
ଗର୍ବ ଓ ଗୌରବ ସେମାନେ
ବଂଚିରହିଛନ୍ତି ଉତ୍ସର୍ଗ କରି
ନିଜ ଜୀବନକୁ ॥

ଗର୍ବସହ ଯେବେ
ସାଥୀହୁଏ ଅହଂକାର

ସେ ବ୍ୟକ୍ତିଟି ନିଜେବି
ନିଜର ହୋଇ ରହେନି
ଧରାକୁ ସରାମଣେ ସିଏ,
ତା' ଚରିକଡ଼ ଆଲୋକ
ମଳିନ, ନିଷ୍ପ୍ରଭ ହୋଇ
ଧୀରେ ଧୀରେ ଅନ୍ଧକାର ହୁଏ ॥

ଗର୍ବ ଗଂଜନ ଭଗବାନ
ସହନ୍ତିନି କା' ବଡ଼ପଣ
ସମୂଳେ କରନ୍ତି ନିପାତ
ଗରବେ ହେଲେ ଆତଯାତ
ଗର୍ବକୁ କର ପରିହାର
ତରିବ ଭବ ପାରାବାର ॥

୦ ୦

# ବଂଧୁ

କାହାକୁ କହିବି ମୋ ମନକଥା
କିଏ ବା ଶୁଣିବ ମୋ ଦୁଃଖ,
ବଂଧୁପରି ବଂଧୁଟିଏ ପାଇଲେ ହିଁ
ସିଏ ସାଥୀ ଦେବ ମୋ ଜୀବନଯାକ ॥

ସେ ହିଁ ପ୍ରକୃତ ବଂଧୁ
ଯିଏ ସାଥୀ ଦିଏ ବିପଦ ବେଳାରେ
ଶାନ୍ତିଦିଏ ଅଶାନ୍ତ ମନକୁ,
ଛାଇପରି ରହିଥାଏ ଦିନରାତି ପାଖେପାଖେ
ଅବୁଝାମନକୁ ମନଖୋଲି
ସାନ୍ତ୍ୱନା ଦେବାକୁ ॥

ପ୍ରତିଟି କର୍ମରେ ଲୋଡ଼ାହୁଏ
ସହାୟକଟିଏ, ସିଏ ବଂଧୁ ହେଉ
ସଖାହେଉ ବା ହେଉ ମିତ୍ର ପରିଜନ,
ସେମାନଙ୍କ ସାହାଯ୍ୟରେ
ଅକ୍ଳେଶରେ ସମସ୍ୟା ସବୁର
ହୁଏ ସମାଧାନ ॥

ପତ୍ନୀର ସହଯୋଗ ବିନା
ପତିର ଜୀବନ ହୁଅଇ ନିଷ୍ଫଳ
ଧନର ଅଭାବ ଘଟିଲେ
ପତ୍ନୀ ସାଥୀ ଦିଏ
ମନରେ ଦେଇଥାଏ ବଳ
ସୁଖରେ ଦୁଃଖରେ ସମଭାବ
ଆଣିଥାଏ ସିଏ,
ହାତରେ ହାତ ରଖି
ପତିର ପାଖେ ପାଖେ ଥାଏ ॥

ରୋଗ ଶଯ୍ୟାରେ ବ୍ୟକ୍ତିଟି
ଚାହିଁଥାଏ ବଂଧୁବାଂଧବଙ୍କୁ
ଖୋଜିଥାଏ ଦେଖିବାକୁ
ଆତ୍ମୀୟସ୍ୱଜନ,
ସେମାନଙ୍କ ସହଯୋଗ ବିନା
ରୋଗରୁ ମୁକ୍ତି ମିଳିବା
କଷ୍ଟକର ହୁଏ
ଜୀବନଟା ଲାଗେ ଅକାରଣ ॥

ବିପଦ ଆପଦରେ ଯିଏ
ପାଖେ ଠିଆ ହୁଏ
ରାଜକାର୍ଯ୍ୟ ତଥା ଶ୍ମଶାନରେ ବି
ଯିଏ ଆସି ଦେଖାଦିଏ,
ସେ ହିଁ ପ୍ରକୃତ ବଂଧୁ

ସବୁବେଳେ ତା'ର ଉପସ୍ଥିତି
ଲୋଡ଼ା ପଡ଼ିଥାଏ ॥

ସତ୍ୟ ଶାନ୍ତି ଦୟା କ୍ଷମା
ଧର୍ମ ଜ୍ଞାନ ଆଦି ଗୁଣ
ଅଟନ୍ତି ବ୍ୟକ୍ତିଟିର
ପ୍ରକୃତ ବଂଧୁପରି
ସତ୍ୟ ମାତା ଜ୍ଞାନ ପିତା
ଧର୍ମ ହେଉଅଛି ଭାଇ,
ଦୟାମିତ୍ର ଶାନ୍ତି ପତ୍ନୀ
କ୍ଷମା ପୁତ୍ର ଯେ ବୋଲାଇ ॥

ବଂଧୁଟିଏ ଲୋଡ଼ା
ସଫଳ ଜୀବନଟି ପାଇଁ,
ବଢ଼ାଅ ବଂଧୁତାର ହାତ
ରହିଥାଅ ସବୁବେଳେ
ପ୍ରକୃତ ବଂଧୁଟିଏ ହୋଇ ॥

୦ ୦

# ତ୍ୟାଗ

ତ୍ୟାଗରେ ଥାଏ ଭୋଗ
ବ୍ୟକ୍ତିଟି ବୟସ ବଢ଼ିବା ସଂଗେସଂଗେ
ବହୁତ ଲୋକଙ୍କର
ତ୍ୟାଗ କରିବା ଦେଖେ,
କ'ଣ ତ୍ୟାଗ କଲେ
ସେ ବି ଭୋଗ କରିବ
କେହି ତାକୁ ବତାନ୍ତିନି
ତା' ଚଉରିକଡ଼ ସଂସାରକୁ
ଦେଖି ଦେଖି ଶିଖେ ।।

ହଂସଟିଏ ବାସ କରିବାକୁ
ଭଲପାଏ ଜଳପୂର୍ଣ୍ଣ ଜଳାଶୟଟିରେ
ଜଳ ଶୁଷ୍କ ହେଲେ ସେ
ଜଳାଶୟଟିକୁ ପରିତ୍ୟାଗ କରେ
ବର୍ଷାଜଳରେ ତାହା ପରିପୂର୍ଣ୍ଣ ହେଲେ
ପୁଣି ସେଠାକୁ ସେ ଲେଉଟେ
ମଣିଷଟି ହଂସପରି ନୁହେଁ

ଆଶ୍ରୟସ୍ଥଳୀକୁ ତ୍ୟାଗକରି
ପୁଣି ଲେଉଟି ଆସିଲେ
ତାକୁ ଅମଣିଷ କହନ୍ତି
ଯାହାକୁ ତ୍ୟାଗ କରାଯାଏ
ତାକୁ ସବୁଦିନ ପାଇଁ
ତା ସହ ସବୁ ସଂବନ୍ଧକୁ
ତ୍ୟାଗ କରିଦେଇ ॥

ପୁଷ୍କରିଣୀର ଜଳ ସ୍ୱଚ୍ଛ ହୁଏ
ତାହା ପ୍ରବାହିତ ହେଲେ
ଅର୍ଜିତ ଧନ ସେମିତି
ରକ୍ଷା କରାଯାଏ
ତାକୁ ତ୍ୟାଗ କରିଦେଲେ
ଉତ୍ତମ କାର୍ଯ୍ୟରେ ବିନିଯୋଗ କଲେ
ଧନକୁ ରକ୍ଷା କରିହେବ,
ଏପରି ନକଲେ କୁଅଭ୍ୟାସ ଯେତେ
ବ୍ୟକ୍ତିଟି ପାଖରେ ସେ ସବୁ
ଦେଖା ଦେଉଥିବ ॥

ଇନ୍ଦ୍ରିୟାନୁଗତ ବିଷୟମାନେ
ବିଷ ସଦୃଶ, ସେମାନଂକୁ ତ୍ୟାଗକରିବା
ବିବେକୀ ଲୋକର କାର୍ଯ୍ୟ ହୋଇଥାଏ,
ଦୟା, କ୍ଷମା, ଧୈର୍ଯ୍ୟ, ପବିତ୍ରତା
ସତ୍ୟକଥନ ଆଦି ଗୁଣଗୁଡ଼ିକୁ

ତ୍ୟାଗ ନ କରି ଅମୃତତୁଲ୍ୟ ପାନକଲେ
ମୋକ୍ଷ ବା ମୁକ୍ତି ମିଳିଥାଏ ॥

ଲଜ୍ୟାକୁ ତ୍ୟାଗ କରି
ଗୃହିଣୀଟି ନଷ୍ଟ ହୋଇଯାଏ
ଆଳସ୍ୟ ତ୍ୟାଗ ନକରି
ବିଦ୍ୟାର୍ଥୀଟି ମୂର୍ଖ ହିଁ ବୋଲାଏ
ଗୁଣହୀନ ବ୍ୟକ୍ତିଟି
ରୂପବାନ୍ ହେଲେବି ପାଏନି ଆଦର,
ଶୀଳ ସ୍ୱଭାବ ତ୍ୟାଗକରି
ବ୍ୟକ୍ତିଟି ହୁଏ ଦୂରାଚାର ॥

ଶକ୍ତିହୀନ ରାଜାଙ୍କୁ
ତ୍ୟାଗ କରନ୍ତି ପ୍ରଜାଗଣ
ପକ୍ଷୀମାନେ ତ୍ୟାଗକରନ୍ତି ବୃକ୍ଷକୁ
ତାହା ହୋଇଲେ ଫଳହୀନ
ନିର୍ଦ୍ଧନ ବ୍ୟକ୍ତିକୁ ବଂଧୁମାନେ
ଛାଡ଼ି ଚାଲିଯା'ନ୍ତି
ବିଦ୍ୟାପ୍ରାପ୍ତି ପରେ ସ୍ୱାର୍ଥପର
ଶିଷ୍ୟଟି ଗୁରୁଙ୍କୁ ଆଉ ଦେଖା ନ ଦିଅନ୍ତି
ଜୀର୍ଣ୍ଣ ବସନ ତ୍ୟାଗକରି
ମନୁଷ୍ୟ ଯେପରି ନୂତନବସ୍ତ୍ର
ପରିଧାନ କରେ,

ପୁରାତନ ଶରୀର ଛାଡ଼ି
ଦେହୀ ବିରାଜେ ନୂତନ ଶରୀରେ ॥

ଧର୍ମରେ ଯଦି ଦୟା ନାହିଁ
ସେଭଳି ଧର୍ମ କାହା ପାଇଁ
ଗୁରୁ ନହେଲେ ବିଦ୍ୟାବନ୍ତ
ତାଙ୍କଠି ନରଖ ସମ୍ବନ୍ଧ
କ୍ରୋଧୀ ପତ୍ନୀଙ୍କୁ ଶାନ୍ତ କର
ସବୁ ଅଶାନ୍ତି ହେବ ଦୂର
ବଂଧୁ ହୋଇଲେ ଶ୍ରଦ୍ଧାହୀନ
ଶାନ୍ତିରେ କଟେନି ଜୀବନ

ଏ ସବୁକୁ ଯେତେ ସମ୍ଭବ
ସେତେ ତ୍ୟାଗକର
ଜୀବନ ହେବ ସୁଖକର ।

୦ ୦

# କଳି

ଆମ ହାତରେ ଅଛି ସବୁକିଛି
ଆମେ ଚାହିଁଲେ ଘରଟି ଆମ ସ୍ୱର୍ଗ
ପୁଣି ଅଣଦେଖା କଲେ
ଘରଟି ନର୍କପୁରୀ ହୁଏ,
କୋଣେ ଅନୁକୋଣେ ନିଆଁର
ଝୁଲ ସବୁ ଓହଳି ପଡ଼େ ତ ପୁଣି
ଆମେ ଚାହିଁଲେ ଚାରିଆଡ଼େ
ପ୍ରୀତିର ସୁଗନ୍ଧ ବିଞ୍ଚି ହୋଇଯାଏ ॥

ସିଏ ଶାଶୁ ବୋହୂ ଭିତରର
କଳି ହେଉ କି ସ୍ୱାମୀ ସ୍ତ୍ରୀର
ବାପ ପୁଅ ଭିତର କଳି
ହେଉକି ଭାଇ ଭାଇର
ଜଣେ ନିଆଁ ହେଲେ
ଅନ୍ୟଜଣକୁ ପାଣି ହେବାକୁ ପଡ଼ିଥାଏ,
ଦି' ଜଣ ଯାକ ନିଆଁ ହେଲେ
ଘରର ସୁଖଶାନ୍ତି ଭିତରେ ଭିତରେ
କେହି ଜାଣନ୍ତିନି କେତେବେଳେ ଉଜୁଡ଼ିବିଯାଏ ॥

ମନର କ୍ରୋଧ ନିଆଁ ଭଳି
ଓ ସହନଶୀଳତା ବା ନିରବତା ପାଣିପରି
ଜଣେ ନିଆଁ ହୋଇ ଗର୍ଜିଲେ
ଆଉ ଜଣେ ସହିଯିବା ଭଲ,
ଶାନ୍ତି ବିରାଜଇ ଘରିଆଡ଼େ
ଆସ୍ତେ ଆସ୍ତେ, ଏ ସବୁ ସମୟର ଖେଳ ॥

ଜୀବନ ଜିଇଁଲେ ସବୁପ୍ରକାର
କଳିର ସାମ୍ନା କରିବାକୁ ହେବ,
ସବୁର ତ ସମାଧାନ ଅଛି
ଆମେ ଚହିଁଲେ ଘରଟିକୁ ସ୍ୱର୍ଗକରିଦେବା
ନଚେତ୍ ତାହା ନର୍କ ପାଲଟିବ ॥

୦ ୦

# କାମ

ଜୀବଟି ପକ୍ଷୀଟିଏ ହେଲେ
କାମନା ବାସନା ତା'ର
ଦୁଇଗୋଟି ଡେଣା
ସେ ପକ୍ଷୀଟି କେତେଦୂର ଉଡ଼େ
ତାହା ନଥାଏ କାହାକୁ ବି ଜଣା
କାମନା ଜର୍ଜରିତ ହୋଇ
ଜୀବଟି ନାନା ଅପକର୍ମ କରେ,
ନିନ୍ଦା ଅପବାଦ ସବୁ ଆପଣାଇ
ସିଏ ଜିଇଁ ଥାଉ ଥାଉ ମରେ ॥

କାମ ଓ କ୍ରୋଧଯୁକ୍ତ ବେଗକୁ
ସହିଯିବାକୁ ବ୍ୟକ୍ତିଟି ସମର୍ଥ ହେଲେ
ତାକୁ ଯୋଗୀ ଓ ସୁଖୀ କୁହାଯାଏ,
ଆତ୍ମଦର୍ଶୀ ସାଂଖ୍ୟଯୋଗୀ ମାନଙ୍କୁ
ନିର୍ବାଣବ୍ରହ୍ମ ଅଚିରେ ପ୍ରାପ୍ତି ହୁଏ ॥

କାମନା ହିଁ ଦୁଃଖର କାରଣ
କାମନା ପୂରଣ ନହେଲେ
ତାହା କ୍ରୋଧରେ ପରିଣତ ହୁଏ,
କ୍ରୋଧ ସର୍ବଗ୍ରାସୀ ଓ ମହାପାପୀ
ଏହା ଶତ୍ରୁ ସାଜି ବ୍ୟକ୍ତିଟିକୁ
ନାନାବିଧ ନିର୍ଯ୍ୟାତନା ଦିଏ ॥

ଧୂଆଁ ଯେପରି ଅଗ୍ନୀକୁ
କରଇ ଆବୃତ୍ତ
ଦର୍ପଣ ଯେପରି ମଳିଦ୍ୱାରା
ହୁଏ ଆଚ୍ଛାଦିତ
ଗର୍ଭଟି ଜରାୟୁରେ ଯେମିତି
ରହେ ସୁରକ୍ଷିତ,
ଠିକ୍ ସେମିତି କାମନା ଦ୍ୱାରା
ଜ୍ଞାନ ବା ବିବେକ ହୁଏ କବଳିତ ॥

ଇନ୍ଦ୍ରିୟ, ମନ ଓ ବୁଦ୍ଧି
କାମନାର ଅଟେ ବାସସ୍ଥାନ
ଏମାନଙ୍କ ସାହାଯ୍ୟରେ
କାମନା ଜ୍ଞାନକୁ କରେ କରାୟତ,
ଦେହାଭିମାନୀ ମନୁଷ୍ୟ
ଏଥିରେ ହୁଅଇ ମୋହିତ ॥

ସ୍ଥୂଳ ଶରୀର ଅପେକ୍ଷା
ଇନ୍ଦ୍ରିୟମାନେ ଅଟନ୍ତି ସବଳ
ଇନ୍ଦ୍ରିୟମାନଙ୍କଠାରୁ ମନର
ଶକ୍ତି ଅଟଇ ପ୍ରବଳ
ମନଠାରୁ ବୁଦ୍ଧି ଅଟେ ଶ୍ରେଷ୍ଠ,
କାମନା ବୁଦ୍ଧିକୁ କରି ଦିଏ ନଷ୍ଟ ॥

କାମନା ମଣିଷର ଚିରଶତ୍ରୁ
ତାକୁ ସାଧମତେ କର ଯେ ନିପାତ
ସୁଖମୟ କର ଜୀବନକୁ
ନିଜଦ୍ୱାରା ନିଜକୁ କରି ବଶୀଭୂତ ॥

୦ ୦

# କ୍ରୋଧ

ନିଆଁ ଜାଳିଦିଏ କାଠିକୁଟା
ଘରଦ୍ୱାର ଆସବାବ ପତ୍ର
ନିମିଷକେ କରିଦିଏ ସବୁ ପାଉଁଶ,
କ୍ରୋଧ ଜାଳିଦିଏ ସାରା ଶରୀରକୁ
କରିଦେଇ ତାକୁ ଅଚଳ ଅବଶ ।।

ହିତାହିତ ଜ୍ଞାନ ସବୁ ହଜିଯାଏ
ଘଟଣା ଭିତରେ ମୁଣ୍ଡଟେକେ
ଆକସ୍ମିକ ଦୁର୍ଘଟଣା ସବୁ
ଦେହ ମନ ଥରିଯାଏ,
ଭାବିଲା ବେଳକୁ କିଛି ବି ନଥାଏ ।।

ଦିନରାତି ବିଷୟ ବାସ୍ନାରେ
ମଗ୍ନ ଇନ୍ଦ୍ରିୟ ସବୁ
ଅହରହ କ୍ରିୟାଶୀଳ
ଟିକିଏ ବି ବାଧା ଉପୁଜିଲେ

କ୍ରୋଧର ଉଦ୍ଭବ

କ୍ରୋଧରୁ ଜାତହୁଏ ମୁଢ଼ଭାବ
ଓ ତହିଁରୁ ସ୍ମୃତି ଶକ୍ତି ଲୋପ
ସ୍ମୃତିର ବିନାଶରେ ବୁଦ୍ଧି ନାଶ ହୁଏ,
ଓ ସବୁ ଅନର୍ଥ ହଠାତ୍ ହିଁ ଘଟିଯାଏ ।।

କ୍ରୋଧକୁ ଯେ କରଇ ଆୟତ୍ତ
ଦୁନିଆରେ ସେ ହିଁ ଭାଗ୍ୟବନ୍ତ
ସେ ହିଁ ରହଇ ନିଶ୍ଚିତ,
ଦିନେ ନୁହଁ କାଳେ ନୁହଁ
ଜନମଠୁ ମରଣ ପର୍ଯ୍ୟନ୍ତ ।।

୦ ୦

# ବାପା

ବାପା ଶବ୍ଦ ସମ୍ବୋଧନରେ
ମୋ ଭିତରୁ ବାହାରି ଆସେ ମୁଁ ନିଜେ
ଆଖି ପୁରେଇ ଦେଖିନିଏ ନିଜ
ହାତରେ ଗଢ଼ିଥିବା ପିଲାଟିକୁ

ପିଲା ଦେହରେ ତାତି ବଢ଼ିଲେ
ମୋ ଦେହରେ କମ୍ପ ଆସେ
ପିଲାଟି ଚାଲୁଚାଲୁ ଝୁଣ୍ଟି ପଡ଼ିଲେ
ମୋ ଦେହରୁ ରକ୍ତ ଝରେ
ପିଲା ନାଁରେ ମୁଁ ପରିଚିତ ହେଲେ
ଆଖିରୁ ଆନନ୍ଦର ଅଶ୍ରୁ ବହେ
ପିଲାଟି ବାଟ ହୁଡ଼ିଲେ
ମୁଁ ତାକୁ ରାସ୍ତା ଦେଖାଏ
ସେଥିପାଇଁ ବୋଧେ କହନ୍ତି
ବାପଥିଲା ପିଲା ସଭାରେ ହାରେନି ।

○○

# ମାଆ

ମା' ଶବ୍ଦଟି ଅତି ପବିତ୍ର
ବିପଦ ଆପଦରେ
ସ୍ୱତଃ ଉଚ୍ଚାରିତ ହୁଏ,
ପିଲାଟି ତୁଣ୍ଡରୁ ମା' ଡାକ
ସତେ ଯେମିତି ମା' ଟି
ଆତୁର ଆଖିରେ ଚାହିଁ ରହିଥାଏ ।।

ଦଶମାସ ଦଶଦିନ
ଗର୍ଭରେ ଧରି ଯିଏ
ଆଣିଲା ଏ ଧରାଧାମ,
ଧନ୍ୟ ତା'ର ଧୈର୍ଯ୍ୟ
ଧନ୍ୟ ତା' ସାହସ
ଧନ୍ୟ ତା'ର ପରାକ୍ରମ ।।

ଆଖିରୁ ବହିଲେ ଲୁହ
ତା' ଆଖି ଲୁହରେ ଭରେ
ଦି' ଧାର ହସକୁ ସିଏ
ଚାହିଁଥାଏ ଆତୁରରେ

ମା' ପରି କେହିନାହିଁ
ଜଗତେ ନିଜର,
ମା' ଡାକଠାରୁ ଆଉକିଛି
ନୁହଁଇ ମଧୁର ॥

କାଲିଥିବା ଝିଅଟି
ଆଜି ରହୁଁରହୁଁ ମା' ହୋଇଗଲା
ତା' ନିଜ ମାଆ ପାଖରେ
ରାଗ ରୋଷ ଅଭିମାନ
ମନେ ପକାଇ କେତେ ଯେ କାଂଦିଲା
ଜୀବନକୁ ତୁଛ କରି ମାଆ
କେମିତି ତା ପଛରେ
କାଟୁଥିଲା ଦିନ,
ଅମୃତବୋଳା କଥା କେଇପଦ ତା'ର
ହୃଦୟରେ ଭରୁଥିଲା ପ୍ରାଣ ॥

କାଲିଥିବା ଛୋଟ ପୁଅ
ରହୁଁରହୁଁ ଆଜି
ବାପା ହୋଇଗଲା
ମାଆ ପାଖରେ ଅଳି
ଅଝଟ ସବୁ ଯେତେ ଭାବେ
ସେତେ ମନେ ପଡୁଥିଲା
ଭଲରେ ଦେଖି ପାରୁ ନଥିବା
ଆଖି ଓ ସଳଖ ହୋଇ

ଠିଆ ହୋଇ ପାରୁନଥିବା ଅଣ୍ଟାରେ
ମାଆ ଆଜି ବି ରହିଁ ରହିଛି
ତା'ର ଫେରିବା ବାଟକୁ
ହାରିଯାଇଥିବା ମନରେ ତା'ର
ଜିତିପାରିବାର ଟୋପାଏ ବିଶ୍ୱାସ ଦେବାକୁ ॥

ମାଆ ହେଉଛି ସ୍ୱର୍ଗଠାରୁ ବଡ଼
ତା'ର ହୃଦୟ ସମୁଦ୍ରଠାରୁ
ଆହୁରି ଗଭୀର
ଆକାଶ ଠାରୁ ବିଶାଳ
ଆଲୋକ ଠାରୁ ଆହୁରି ଉଜ୍ଜ୍ୱଳ
ବିଶ୍ୱାସ ଠାରୁ ଆହୁରି ବିଶ୍ୱସ୍ତ
ଝରଣା ଠାରୁ ଆହୁରି ସ୍ୱଚ୍ଛ ଓ ନିର୍ମଳ
ପ୍ରେମଠାରୁ ଆହୁରି ନିବିଡ଼, ନିଜର ॥

ମାଆ ଭଳି ଅମୂଲ୍ୟ ରତ୍ନକୁ
ମନଭରି ଭଲପାଅ,
ବୟସର ଅପରାହ୍ନରେ
ତା' ଚଲାପଥକୁ
ଯେତେପାର ଫର୍ଚ୍ଚା କରିଦିଅ ॥

୦ ୦

# ଝିଅ

ଝିଅଟି ଘରର ଲକ୍ଷ୍ମୀ
ଘରକୁ ଆସିଲା ପରେ ଝିଅଟିଏ
ଘରଟି ପୁରିଉଠେ ଆନନ୍ଦ ଉଲ୍ଲାସରେ,
କୋଣେ ଅନୁକୋଣେ ଖେଳିଯାଏ
ଏକ ଅପୂର୍ବ ପୁଲକର ବାସ୍ନା
ବେଶୀ ଖୁସିହୁଏ ମା’ ତାର ଭିତରେ ଭିତରେ ।।

ମାଆର ପଣତ କାନି ତଳେ
ବଡ଼ ହୁଏ ସିଏ
କଥାକହେ, ଚାଲିଶିଖେ
କ’ଣ ଲୋଡ଼ା ହୁଏ ତା’ର
ମାଆକୁ ହିଁ କହେ
ଝିଅ ଓ ମାଆ ଭିତରର
ସଂପର୍କ କେଡ଼େ ମଧୁମୟ,
ଏଥିରେ ନଥାଏ ଆବିଳତା
କିଂବା କିଛି ମିଛ ଅଭିନୟ ।।

ଝିଅ ବଡ଼ ହେଲା ପରେ
ମାଆର ଦୁଃଖ ଯାଏ
ଆଗକୁ ପଛକୁ ବିପଦ
ଆପଦକୁ ଝିଅ ଠିଆ ହୁଏ
ମାଆ କାନ୍ଦିଲେ ତା' ଆଖିରୁ
ପୋଛିଦିଏ ଲୁହ,
ଛାଇପରିଥାଏ ମାଆ ପାଖେ
କେବେହେଲେ ଫେରାଏନି ମୁହଁ ॥

ହାତକୁ ଦି' ହାତ ହେଲେ
ତା'କୁ ଘର ଛାଡ଼ିବାକୁ ପଡ଼େ
ବୋହୂ ହୋଇ ଯାଏ ପରଘର
ଓ ସେ ଘରକୁ ସମ୍ଭାଳେ
ପରକୁ ନିଜର କରେ
ମନଉଣା କରେନି କାହାରି,
ବାପଘର ନାଁ ରଖେ
ସଭିଙ୍କ ଆଗରେ ସିଏ
ବୋଲାଏ ସଂସ୍କାରୀ ॥

ଝିଅଟିଏ ମାଆ ହୁଏ
ପରିବାର ଦୁଃଖ ଯାଏ
କୁଳରକ୍ଷା ବଂଶରକ୍ଷା ହୁଏ

ଶିଶୁଟିର ହାତଧରି
ଓଠଧରି କଥା କହିବା
ଚାଲିବା ଶିଖାଏ,
ଯାହାସବୁ ଶିଖିଥାଏ ପିଲାଦିନୁ
ତାକୁ କାମରେ ଲଗାଏ ॥

ବୃଦ୍ଧ ଅବସ୍ଥାରେ ପିତାମାତାଙ୍କୁ
ଆଶ୍ରା ନ ଦେଇ କେବେକେବେ
ପଚାରେନି ପୁଅ, ଝିଅଟିଏ
କିଂତୁ ଆସି ଠିଆହୁଏ ପାଖରେ
ଦରକାର ପଡ଼ିଲେ,
ଭାଇକୁ ବୁଝାଏ ଶୁଝାଏ,
ବାପା ମାଆଙ୍କ ସେବା ଯତ୍ନରେ
ତା'ର ମନପ୍ରାଣ ଦିଏ ॥

ହେଲେ ଏ ମଣିଷ ସମାଜ
ଆଜିଯାଏ ଚିହ୍ନିଲାନି ଝିଅକୁ
ଝିଅ ଜନମ ପରଘରକୁ ଭାବି
ଜନ୍ମବେଳୁ କଲା ହତାଦର
ପୁଅଭଳି ଝିଅକୁ ସେ
କଲାନି ନିଜର
ପୁଅ ଝିଅ ଭିତରେ ଗଢ଼ିଦେଲା

ଅଭେଦ୍ୟ ଦୁର୍ଭେଦ୍ୟ ପାଚେରୀ,
କୁଳରକ୍ଷା ବଂଶରକ୍ଷା ପାଇଁ
ପୁଅଟିଏ ନିହାତି ଲୋଡ଼ାଭାବି
ଝିଅର ଉପସ୍ଥିତି ଦେଲା ସେ ପାଶୋରି ॥

ଝିଅ ନୁହେଁ ସିଏ
କନ୍ୟା ରତ୍ନ ଟିଏ
ତା'କୁ କର ନାହିଁ ପର,
ପୁଅଭଳି ତାକୁ ଭଲପାଅ
ସିଏ ହିଁ ତୁମ ମୃତ୍ୟୁ ପର୍ଯ୍ୟନ୍ତ ଏକାନ୍ତ ନିଜର ॥

୦ ୦

# ପୁଅ

ପୁଅ ହୋଇଛି ବୋଲି
ନାହିଁ ନଥିବା ଆନନ୍ଦ
କୁଳରକ୍ଷା ହେଲା
ପିତୃପୁରୁଷଙ୍କୁ ପାଣିଦେବ
ଜୀବନର ଚରମଇଚ୍ଛା
ଆଜି ପୂରଣ ହେଲା,
ପୁଅଟିଏ ଆସିବାରୁ
ଘରସାରା ଖୁସିରେ
ଉଚ୍ଛୁଳି ପଡ଼ିଲା ।।

ଗୋଟିଏ ମାତ୍ର ଗୁଣୀ ପୁତ୍ର
ଶତାଧିକ ମୂର୍ଖ ପୁତ୍ର ଠାରୁ ଭଲ
ଗୋଟିଏ ଚନ୍ଦ୍ର ଯେତେ
ଶାନ୍ତ, ଶୀତଳ, ଉଜ୍ଜ୍ୱଳ
ଆଲୋକରେ ପ୍ରତିଭାତ
ସେତେ ଆଲୋକ ଅଗଣିତ
ତାରକା ପୁଞ୍ଜରେ ମିଳେନି

ଚନ୍ଦ୍ରର ଆଲୋକ ଉପଭୋଗ୍ୟ
ତାରାଙ୍କ ଆଲୋକ ମଳିନ, ନିଷ୍ପ୍ରଭ
ଶକ୍ତିହୀନ ଲାଗେ,
ଗୁଣୀପୁତ୍ରଟିକୁ ସଭିଏଁ ଆଦର କରନ୍ତି
ଭାଗ୍ୟ ବି ଭଗାରୀ ସାଜେ
ମୂର୍ଖ ପୁତ୍ର ସଂଗେ ॥

ପୁଅ ଯୋଗ୍ୟ ହେଉ
କି ଅଯୋଗ୍ୟ ହେଉ
ଧନ ସଂଚୟ କରିବା
ଲୋଡ଼ାହୁଏ ନାହିଁ,
ଧନ ଖାଲି ମରିଚିକା ପରି
ଲୁଚିଯାଏ ଆପେ ଆପେ
କ୍ଷଣେ ଦେଖା ଦେଇ ॥

ଆଶାରେ ବଂଚିବା ନିର୍ବୋଧତା
ମନର ଦୁର୍ବଳତା, ଆବେଗ
ଓ ଅନୁଭବର ଛକାପଞ୍ଝା ଖେଳ ଭିତରେ
ବ୍ୟକ୍ତିଟି ଛଟପଟ ହୁଏ,
ମନର ମାନଚିତ୍ରଟି
ନିମିଷକେ ବଦଳି ବି ଯାଏ ॥

ପିଲାଟିଏ ଜନ୍ମ ନହେଲେ
କିଂବା ଜନ୍ମ ହୋଇ ଅଳ୍ପ ବୟସରେ ଚାଲିଗଲେ
ଦୁଃଖ ହେବ ହିଁ ହେବ,
କିଂତୁ ମୂର୍ଖ ପୁତ୍ରଟିଏ ବଂଚିରହି
ସାରା ଜୀବନ ଦୁଃଖ ଦେଉଥିବ ॥

ଯେତେ ପାର ସତ୍ ପାତ୍ରରେ
ଦାନ କରି ଯାଅ, ସଂଚି ରଖନି
ଅକର୍ମା ପୁତ୍ରଟିଏ ପାଇଁ,
ସେ ଧନକୁ ନିମିଷକେ
ଦେବ ସେ ଉଡ଼ାଇ ॥

୦ ୦

# ବୋହୂ

ଆଦରି ନେବାକୁ ସମୟ ଲାଗିବ
ଅପେକ୍ଷା କରିବା ଶିଖ
ସୁଯୋଗକୁ ଆପଣାଅ
ଶାଶୁଙ୍କୁ ମାଆଭଳି ଦେଖ
ବାହାନାକରି ବର୍ଜିଯିବାକୁ
ଚେଷ୍ଟାକରନି, ଅପଦସ୍ତ ହେବ,
ମନଦେଇ କାମ କଲେ ଦୁନିଆ ଜିତିବ ।।

ବାହାହେଲା ପରେ ବୋହୂ ହେଲ
ସେ ପର୍ଯ୍ୟନ୍ତ ତ କାହାର ଝିଅଥିଲ
ଝିଅ ଥିବା ବେଳ କ'ଣ ଭୁଲିଗଲ
ମାଆ ଗାଳି ଦେଉଥିବା ବେଳେ
ମୁଣ୍ଡପାତି ସହି ନେଉଥିଲ,
ଶାଶୁର ଆକଟ ଶୁଣି
ଗଢ଼ିଥିବା ଘରକୁ କାହିଁ
ନିଜେ ଭାଂଗିଦେଲ ।।

ଭକ୍ତିକର, ଶ୍ରଦ୍ଧାକର : ଆଦର ପାଇବ
ଯତ୍ନକର ମନଭରି : ନିଜର ହୋଇବ ।।

୦୦

# ଶାଶୁ

କାହିଁକି ଏ ମନଟା ବୁଝେନି
ଖାଲି କୈଫିୟତ ଖୋଜେ
ଉପାୟ କିଛି ପାଉଁ ପାଉଁ
'ମୁଁ' ଯାଇ 'ମୋ' ଭିତରେ ହଜେ

ବୋହୂ ଆସିଲା ପରେ
ତୁମେ ତ ଶାଶୁ ହେଲ
ଏ ପର୍ଯ୍ୟନ୍ତ ତ କାହାର ବୋହୂଥିଲ
ତମର ବୋହୂ ହେବା ବେଳ
କ'ଣ ଭୁଲିଗଲ ?
ଝିଅ କେତେ କ'ଣ କହିଲା
ମାଫ୍ କରି ହସିଦେଲ,
ବୋହୂ ଥରେ କହିଲେ ବି
କଥାରୁ ଖିଅ କାଢ଼ି ବର୍ଷିଗଲ ।।

ସ୍ନେହକର, ଶ୍ରଦ୍ଧାକର : ସମ୍ମାନ ମିଳିବ
କୋଳକର, ଗେଲକର : ହୃଦୟ ଜିଣିବ ।।

୦ ୦

# ଆଶଙ୍କା

ଆଶଙ୍କା ମନକୁ ଅସ୍ଥିର କରିଥାଏ
ସ୍ୱଚ୍ଛ ନିର୍ମଳ ମନ
ନିମିଷକେ ଆନ୍ଦୋଳିତ
ହୋଇ ଶରୀରରେ ନାନା
ଉପସର୍ଗ ଉପୁଜାଏ,
ପ୍ରତିଟି ମୁହୂର୍ତ୍ତ ବ୍ୟକ୍ତିଟି ପାଇଁ
ଭୟାନକ ମନେ ହୋଇଥାଏ ।।

ଆଶଙ୍କା ଆସେ ଚିତ୍ତକୁ
ବିଭ୍ରାନ୍ତ କରି ଭିନ୍ନ ଏକ ଦିଗେ
ଆଖିପତା ମୁଦି ହୋଇଯାଏ
ମନରେ ଆସେ ଅପ୍ରତ୍ୟାଶିତ ଭାବେ
ଉଦ୍‌ବେଳନର ଭୟାତୁର ରୂପ,
କ'ଣ ହେବ ନ ହେବରେ
ଦିନ ସରେନି କି ରାତି ପାହେନି
ମନକୁ ଛୁଇଁଯାଏ ଅଗଣିତ ପାପ ।।



ଆଶଙ୍କା ଜର୍ଜରିତ ମନରେ
ନିଆଁଲାଗେ ବାରଂବାର
ନିର୍ବାପିତ ହୁଏନି,
ଆଶଙ୍କା ଦୂରୀଭୂତ
ନହେବା ପର୍ଯ୍ୟନ୍ତ
ମନକୁ ନିସ୍ତାର ମିଳେନି ॥

ଆଶାକୁ ନେଇ ମଣିଷ
ସ୍ୱପ୍ନଦେଖେ କେମିତି
ଶାନ୍ତିରେ ବଂଚିବାକୁ ହେବ,
ହେଲେ ଆଶଙ୍କାରେ ମଣିଷ
ପୋଡ଼ିଜଳି ଯାଏ
ଚାହୁଁଥିବା ଜିନିଷଟି
କାଳେ ତା'କୁ ନ ମିଳିବ ॥

ଆଶା ପୂରଣ ନହେଲେ
ଆଶଙ୍କା ବଢ଼ିବଢ଼ି ଚାଲେ
ଆଶା ଓ ଆଶଙ୍କା ଉଭୟେ
ଅନିଶ୍ଚିତ ହେଲେବି
ଆଶାରେ ମଣିଷକୁ ମିଳେ
ବଂଚିବାର ମୋହ,
ଆଶଙ୍କାରେ ଆଖିରୁ
ଗଡ଼ିଆସେ ଅନିଶ୍ଚିତତାର
ଅସରାଏ କୋହଭରା ଲୁହ ॥

ଆଶଙ୍କା ଘୋଡ଼େଇ ଦିଏ
ମନରେ ଭୟର ଚାଦର
ସେ ଭୟର ବାସ୍ତବିକତା କିଛି ନ ଥାଏ,
ସେଭଳି ଭୟକୁ ସାମ୍ନା କରିବାକୁ
ବ୍ୟକ୍ତିଟି ପଛଘୁଞ୍ଚା ଦିଏ ।।

ଆଶଙ୍କା ଅଜ୍ଞାନକୁ ଡାକି ଆଣେ
ଜ୍ଞାନକୁ ଆବୃତ୍ତ କରି ଅଜ୍ଞାନ
ବ୍ୟକ୍ତିଟିକୁ ପାପ କର୍ମର ବାଟ ଦେଖାଏ,
ଯିଏ ଆଶଙ୍କାକୁ ଧୈର୍ଯ୍ୟର ସହିତ
ମନରୁ ଦୂରେଇ ଦେଇ
ବାସ୍ତବିକତାର ସାମ୍ନା କରେ
ସିଏ ହିଁ ସବୁ କାର୍ଯ୍ୟରେ ସଫଳତା ପାଏ ।।

୦୦

# ପାପ

ପାପଭାରରେ ଯେତେବେଳେ
ନଇଁଯାଏ ପୃଥିବୀ
ଧର୍ମର ଗ୍ଲାନି ହୁଏ ଓ
ଅଧର୍ମ ବଢ଼ିବଢ଼ି ଚଲେ
ପରମାତ୍ମା ନିଜକୁ
ସାକାର ରୂପରେ କରନ୍ତି ପ୍ରକାଶ,
ଧର୍ମ ସଂସ୍ଥାପନା କରି
ଅଧର୍ମକୁ କରନ୍ତି ବିନାଶ ।।

ରଜୋଗୁଣରୁ ଜାତ କାମନା
ହେଉଛି ପାପର କାରଣ
କାମନା କ୍ରୋଧରେ ପରିଣତ ହୋଇ
ସର୍ବଗ୍ରାସୀ ଓ ମହାପାପୀ ହୁଏ,
ତାହା ବ୍ୟକ୍ତିଟିର
ଅନେକ ଶତ୍ରୁ ହୋଇଯାଏ ।।

ମନ ଜାଣେ କରିଥିବା ପାପ
ଏହା କେବେ ଲୁଚିରହେ ନାହିଁ

ଦିନେ ନା ଦିନେ ଏହା
ପାତାଳରେ ଥିଲେ ବି
ପଦାକୁ ବାହାରେ,
ମୃତଲୋକକୁ ଜାତିଭାତ
ଦେଲାପରି ବ୍ୟକ୍ତିଟି
ପାପ ପାଇଁ ପ୍ରାୟଶ୍ଚିତ୍ତ କରେ ॥

ଅସତ୍ ଉପାୟରେ ଅର୍ଜିତ
ଧନ ଭୋଗ ହୁଏ ନାହିଁ
ଯଦି ଭୋଗ ହୁଏ
ସେଥିରେ ସୁଖ ମିଳିନଥାଏ
ସେଥିପାଇଁ କହନ୍ତି
ପାପଧନ ପ୍ରାୟଶ୍ଚିତ୍ତରେ ଯାଏ ॥

ଅନ୍ୟାୟରେ ଅର୍ଜିତ ଧନକୁ
କହିଥାନ୍ତି ପାପଧନ
ସେଥିରେ ପେଟ ପୁରେନି
କି ତୃଷା ମେଣ୍ଟେନି
ସେଭଳି ଧନ ହୁଏ ନାହିଁ ସ୍ଥାୟୀ
କି ସେଥିରେ ଶାନ୍ତି ନ ମିଳଇ ॥

ଡାଉଁଶଟି ରକ୍ତନାଶ କଲାଭଳି
ପାପ ବଉଁଶକୁ ନାଶ କରେ
ପାପର ମାତ୍ରା ବଢ଼ିଗଲେ

ବ୍ୟକ୍ତିଟିର ବଂଶ ନାଶ ହୁଏ,
ଆମିଷ ଯେପରି ବ୍ରତକୁ
ନାଶ କରିଥାଏ ।।

ଭକ୍ତିଯୋଗୀଟିଏ ଆସକ୍ତି ତ୍ୟାଗକରି
ସମସ୍ତ କର୍ମକୁ ତା'ର
ଯେବେ ପରମାତ୍ମାଙ୍କୁ ଅର୍ପି ଦେଇଥାଏ,
ପଦ୍ମ ପତ୍ରରେ ଜଳ ପରି
ସେ ପାପରେ ଆଦୌ
ଲିପ୍ତ ହିଁ ନ ହୁଏ ।।

ପୁଣି ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ
ଅଜ ଅନାଦି ଓ ମହାନ୍ ଈଶ୍ୱର
ବୋଲି ଦୃଢ଼ ଭାବେ ମାନିନିଏ,
ସେ ହିଁ ଜ୍ଞାନବାନ୍ ବୋଲାଏ
ଓ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।।

ପୁଣ୍ୟରେ ଗଢ଼ ଜୀବନକୁ
ଜାଣିଶୁଣି କିଛି ପାପ କର ନାହିଁ,
ପାପ ମଣିଷର ଚିରଶତ୍ରୁ
ଯେତେପାର ସେତେ ତା'ଠାରୁ
ରହ ଯେ ଦୂରେଇ ।।

୦ ୦

# ମାୟା

କେତେ ମାୟା ରଚିଛ ଏଠି
ଆହେ ମାୟାଧର,
କାହକୁ ଜୀବନ ଦେଉଛ
ପୁଣି କାହାଠାରୁ ଜୀବନ
ଛଡ଼ାଇ ନେଉଛ
ମାୟାରେ ମୋହିଛ ଖାଲି
ସାରା ଏ ସଂସାର ॥

ସତ୍ତ୍ୱ, ରଜ, ତମ ତିନିଗୁଣ ରୂପକ
ଭାବଦ୍ୱାରା ଏ ସଂସାର ମୋହିତ ହୁଏ
ପରମାତ୍ମା ତ୍ରୀଗୁଣାତୀତ ଅବିନାଶୀ ବୋଲି
ଏ ଜଗତ ଜାଣେ ନାହିଁ,
ମୂଢ଼ ମନୁଷ୍ୟ ଏଠି
ବହୁ ଦୁଃଖ କଷ୍ଟ ଭୋଗେ
ଦୈବୀମାୟାରେ ଛନ୍ଦି ହୋଇ ॥

ମାୟାରେ ଜ୍ଞାନ ଅପହୃତ ହୁଏ
ଆସୁର ସ୍ୱଭାବ ଆଶ୍ରିତ ନରାଧମ

କରେ ପାପ ଆଚରଣ,
ଯେତେ ବୁଝାଇଲେ ବି
କିଛି ଫଳହୁଏ ନାହିଁ କି
ସିଏ ଯାଏନି ପ୍ରଭୁଙ୍କ ଶରଣ ।।

ଇଚ୍ଛା ଓ ଦ୍ୱେଷ ଜନିତ
ଦ୍ୱନ୍ଦ୍ୱ ଓ ମୋହରେ
ସକଳ ପ୍ରାଣୀ ହୁଅନ୍ତି ମୋହିତ,
କେଉଁ ଅନାଦିକାଳରୁ
ସେମାନେ ମୂଢ଼ତା ବା
ଜନ୍ମମୃତ୍ୟୁ ହୋଇଥା'ନ୍ତି ପ୍ରାପ୍ତ ।।

ଏ ମୂଢ଼ଜନ ସମୁଦାୟ ହୋଇଥା'ନ୍ତି
ଯୋଗମାୟାରେ ସମାବୃତ୍ତ,
ଯେତେ ଚହିଁଲେ ବି
ପରମାତ୍ମା ଦର୍ଶନ ଦିଅନ୍ତିନି ସେମାନଙ୍କୁ
କି ସେମାନେ ବି ହୋଇ ପାରନ୍ତିନି
ପ୍ରଭୁଙ୍କ ଆଶ୍ରିତ ।।

ଅର୍ଥାର୍ଥୀ, ଆର୍ତ୍ତ, ଜିଜ୍ଞାସୁ ଓ ଜ୍ଞାନୀ
ଏହି ଚରିପ୍ରକାରର ଭକ୍ତ
ଦ୍ୱନ୍ଦ୍ୱ ମୋହ ରହିତ ଦୃଢ଼ବ୍ରତା ହୋଇ
ଯାଆନ୍ତି ପ୍ରଭୁଙ୍କ ଶରଣ,

ପବିତ୍ର କର୍ମମାନ କରି ସଦା
କରିଥା'ନ୍ତି ପ୍ରଭୁଗୁଣ ଗାନ ॥

ମାୟାରେ ବଂଧା ଏ ଜଗତ
ସକଳ ପ୍ରାଣୀ ଆତଯାତ
ଧନ୍ୟ ପ୍ରଭୁଙ୍କ ଦୈବୀ ମାୟା
ବଡ଼ ଦୁସ୍ତର ସତେ ଏହା
ଏହାକୁ ତରିବା କଠିନ
ଯାଅହେ ପ୍ରଭୁଙ୍କ ଶରଣ
ବ୍ରାହ୍ମୀ ସ୍ଥିତିକୁ ହେଲେ ପ୍ରାପ୍ତ
କେହି କେବେ ହୁଏନି ମୋହିତ
ଅନ୍ତଃକାଳରେ ଏହି ସ୍ଥିତି
କରେ ନିର୍ବାଣ ବ୍ରହ୍ମପ୍ରାପ୍ତି ॥

୦ ୦

# ଜନ୍ମ

ପିଲାଟିଏ ଜନ୍ମ ହେଲେ
ଘରିଆଡ଼େ ଆନନ୍ଦଉଲ୍ଲାସ
କେତେ ଭୋଜିଭାତ
ଘରଟି ଉଚ୍ଛୁଳି ପଡ଼େ
କୁଆଁକୁଆଁ ଶବ୍ଦରେ,
ନୂତନ ଅତିଥିଟିକୁ
ପାଛୋଟି ନେବାକୁ ଅନାଇଥା'ନ୍ତି
ଘରର ସମସ୍ତେ କେଡ଼େ ସରାଗରେ ।।

ଜନ୍ମ ଖୋଜେ ଜାତକ
ତିଥିବାର ନକ୍ଷତ୍ରକୁ ସାଥୀକରି
ଜାତକ ତିଆରି ହୁଏ,
ଭବିଷ୍ୟତ ଦ୍ରଷ୍ଟା ହୋଇ
ଜାତକ ସବୁ କହିଦିଏ ।।

ପିଲାଟି ଜନ୍ମନିଏ
ତା କଳା କର୍ମକୁ ସାଥୀକରି

ମୃତ୍ୟୁପରେ ଆତ୍ମାଟି ବ୍ୟକ୍ତିଟିର
କର୍ମ ଓ ଗୁଣକୁ ଧରି ପ୍ରବେଶ କରେ
ନୂତନ ଶରୀରେ,
ଉତ୍ତମ କର୍ମ ଜନ୍ମ ଦିଏ ତାକୁ
ମନୁଷ୍ୟ ଯୋନିରେ ॥

ଜନ୍ମ ପୂର୍ବରୁ ସକଳ ପ୍ରାଣୀଥିଲେ ଅବ୍ୟକ୍ତ
ମୃତ୍ୟୁ ପରେ ବି ଅବ୍ୟକ୍ତ ହୋଇଯା'ନ୍ତି,
କେବଳ ମଧ୍ୟକାଳ ହିଁ ଜୀବନ
ଯେତିକି ଦିନ ଏଠି ବଂଚି ରହିଥା'ନ୍ତି ॥

ଜାତହେବା ବ୍ୟକ୍ତିଟିର
ମୃତ୍ୟୁ ସୁନିଶ୍ଚିତ
ଯିଏ ମୃତ ତା'ର ଜନ୍ମ ବି
ଧ୍ରୁବ ହୋଇଥାଏ,
ଜନ୍ମ-ମରଣ ଚକ୍ରରେ ଜୀବ
ସଦା ଘୂରିବୁଲୁ ଥାଏ ॥

ଜୀବ ବା ପୁରୁଷ ହିଁ
ପ୍ରକୃତି ଜନିତ ଗୁଣ ଗୁଡ଼ିକର
ଭୋକ୍ତା ହୁଏ,
ଗୁଣ ଗୁଡ଼ିକର ସଂଗ ହିଁ



ଉଚ୍ଚ ନୀଚ ଯୋନିରେ
ଜନ୍ମ ନେବାର କାରଣ ହୋଇଥାଏ ॥

ଜନ୍ମ ଓ ମୃତ୍ୟୁ
ଜୀବନ ଯାତ୍ରାର
ଆରମ୍ଭ ଓ ଶେଷ,
ବିଭୁ ପଦେ ଆଶ୍ରାକରି
ଯାତ୍ରାକୁ ସହଜ ସୁଗମ କର
ରହିବନି କିଛି ଅବସୋସ ॥

ଠ ଠ

# ମୃତ୍ୟୁ

ସଂସାରରେ ସତ୍ୟ ଯଦି
କିଛିଥାଏ ତାହା ହେଉଛି ମୃତ୍ୟୁ
ମୃତ୍ୟୁ ନାଁ ଶୁଣିଲେ
ଦେହରେ ଆସେ ଶିହରଣ,
ଜୀବନଟା ଲାଗେ ଖାଲି ମରଣ ମରଣ ॥

ଜୀବନ ଜିଇଁବାର ନିଶା ତୁଟିଯାଏ
ହଜିଯାଏ ବଂଚିବାର ସ୍ୱପ୍ନ
ମୃତ୍ୟୁର କାଳରାତ୍ରୀ ଦେହେ,
ଶରୀର ନିଶ୍ଚଳ ନିସ୍ତେଜ ହୁଏ
ଓ ଦେହରେ ଅଣଚାଶ ବହେ ॥

ଦେହଧାରୀ ମନୁଷ୍ୟ ଶରୀରରେ
ବାଲ୍ୟ, ଯୁବା ଓ ବୃଦ୍ଧାବସ୍ଥା
ଯେପରି ହୁଏ ସେହିପରି
ଅନ୍ୟ ଶରୀରର ପ୍ରାପ୍ତି ହୋଇଥାଏ,
କିଂତୁ ସେଥିରେ ଧୀର ମନୁଷ୍ୟ
ଆଦୌ ମୋହିତ ନହୁଏ ॥



ଶରୀର ମରଣଶୀଳ
ହେଲେ ବି ଶରୀରୀ ବା
ଆତ୍ମାର ମୃତ୍ୟୁ ଘଟେ ନାହିଁ
ଶରୀରୀ ଜନ୍ମରହିତ
ଅନାଦି, ଶାଶ୍ୱତ,
ଏହା ଅବିନାଶୀ, ଅବ୍ୟୟ ଓ ନିତ୍ୟ ॥

ଜୀର୍ଣ୍ଣ ବସ୍ତ୍ର ସବୁକୁ
ପରିତ୍ୟାଗ କରି ଶରୀର
ନୂତନବସ୍ତ୍ର ପରିଧାନ କରେ,
ସେହିପରି ବ୍ୟକ୍ତିଟିର ମୃତ୍ୟୁପରେ
ତା'ର ଆତ୍ମା ପୁରାତନ ଶରୀର
ତ୍ୟାଗକରି ପ୍ରବେଶ କରିଥାଏ
ନୂତନ ଶରୀରେ ॥

ଜନ୍ମହେଲେ ମୃତ୍ୟୁ ସୁନିଶ୍ଚିତ ହୁଏ
ମୃତ୍ୟୁପରେ ବି ଶରୀରୀ (ଆତ୍ମା)
ନୂତନ ଶରୀର ଆପଣାଇ ଥାଏ
ଜନ୍ମମୃତ୍ୟୁ ଚକ୍ରରୁ ରକ୍ଷା ପାଇବା
ଏତେଟା ସହଜ ନୁହେଁ,
ଆତ୍ମା ଅବିନାଶୀ
ଜନ୍ମ ମୃତ୍ୟୁ ତା' ପାଖରେ ବି
ହାର ମାନିଯାଏ ॥

ଜୀବ ଥିଲା ବେଳେ ଦେହ
ଦୁଃଖସୁଖ ସବୁ ସହିଯାଏ
ହେଲେ ଜୀବ ଯିବା ବେଳେ
ଦେହକୁ ଅତି ଯାତନା ମିଳିଥାଏ
ଦେହ ଆଉ ନଥାଏ ନିଜ ଅକ୍ତିଆରେ,
ନିଜେ ହଜିଯାଏ ନିଜର ଭିତରେ ।।

ଜାତ ହେବା ପୂର୍ବରୁ
ସକଳ ପ୍ରାଣୀ ଥିଲେ ଅବ୍ୟକ୍ତ
ମୃତ୍ୟୁ ପରେ ବି ଅବ୍ୟକ୍ତ ହୋଇଯା'ନ୍ତି,
ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମୟକୁ
ଜୀବନକାଳ କହିଥା'ନ୍ତି ।।

ପରମାତ୍ମାଙ୍କ ପାଖେ ନିଜକୁ
ପୂର୍ଣ୍ଣ ସମର୍ପଣ କରି
ଭଗବଦର୍ଥ କର୍ମ କରିଯାଅ,
ମୃତ୍ୟୁକୁ ନଡରି
ତୁମେ କାଳଜୟୀ ମୃତ୍ୟୁଞ୍ଜୟୀ ହୁଅ ।।

୦ ୦

# ଜରା

ଜରା ଜୀବନର ଶେଷ ଅବସ୍ଥା
ଭାରି କଷ୍ଟ ଓ ଯନ୍ତ୍ରଣା ଦାୟକ
ହୋଇଥାଏ ଠିକ୍‌ଭାବେ
ଚଳି ନ ପାରିଲେ,
ଅଂଗ ପ୍ରତ୍ୟଙ୍ଗ ସବୁ ଶିଥିଳ
ହୋଇଆସେ ଜରା ଆସିଗଲେ ।।

ଜରାରେ ବ୍ୟକ୍ତିଟି ରୋଗଗ୍ରସ୍ତ ହେଲେ
ଅବସ୍ଥା ଅଣାୟତ ହୁଏ
ଶରୀର ଖୋଜେ ଅନ୍ୟର ଶରଣ,
ଯଦି କେହି ଆଶ୍ରା ନମିଳନ୍ତି
ଜୀବନ ତା' ଲାଗେ ଅକାରଣ ।।

ଜରାରେ ମୃତ୍ୟୁ ଆସେ
ନଦେଇ ସମୟ,
ପିଣ୍ଡରୁ ପ୍ରାଣ ଉଡ଼ିଯାଏ
ଘରିଆଡ଼ କରି ଶୂନ୍ୟମୟ ।।

ଜରା ଓ ମୃତ୍ୟୁରୁ ମୁକ୍ତି ପାଇଁ
ଯେଉଁମାନେ ପ୍ରଯତ୍ନ କରନ୍ତି,
ପରମାତ୍ମାଙ୍କୁ ଆଶ୍ରାକରି
ବ୍ରହ୍ମକୁ ଓ ସମସ୍ତ କର୍ମକୁ
ସେମାନେ ଜାଣି ପାରିଥା'ନ୍ତି ।।

ଦେହଧାରୀ ବିବେକୀ ମନୁଷ୍ୟ
ସତ୍ତ୍ୱ ରଜ ତମ ତିନିଗୁଣକୁ ଯେବେ
ଅତିକ୍ରମ କରିଯାଏ,
ଜନ୍ମ ମୃତ୍ୟୁ ଓ ଜରା ରୂପକ ଦୁଃଖରୁ
ସେ ଅଚିରେ ମୁକ୍ତ ହୋଇ
ମୋକ୍ଷ ଲାଭ କରିଥାଏ ।।

ବାର୍ଦ୍ଧକ୍ୟର ଲକ୍ଷଣ ସବୁ ଭିନ୍ନ ହୋଇଥାଏ
ଏଇ ଯେମିତି ରାସ୍ତାରେ ଚାଲିଚାଲି
କ୍ଲାନ୍ତ ହୋଇଥିବା ବ୍ୟକ୍ତି
ବଂଧନରେ ଥିବା ଘୋଡ଼ା
ମୈଥୁନ କରିପାରୁନଥିବା ସ୍ତ୍ରୀ
ଓ ଖରାରେ ଶୁଖୁଥିବା ବସ୍ତ୍ର
ସବୁରୁ ବାର୍ଦ୍ଧକ୍ୟ ସହଜରେ ଚିହ୍ନି ହୋଇଯାଏ ।।

ବାଲ୍ୟ ଓ ଯୁବାବସ୍ଥା ପରି
ଜରା ବା ବୃଦ୍ଧାବସ୍ଥା
ଆସିବା କଥା ହିଁ ଆସିବ
ତାକୁ ନଡରି ସେବା ଦାନ ଧର୍ମ ପୁଣ୍ୟ
ଯେତେ ପାର ସେତେ କରିଯାଅ,
ଓ ଅବଶିଷ୍ଟ ଜୀବନଟି
ସୁଖ ଶାନ୍ତିରେ ବିତାଅ ॥

○ ○

# ବ୍ୟାଧି

ବ୍ୟାଧିଗ୍ରସ୍ତ ମନ
ସବୁବେଳେ ଚିନ୍ତିତ ବ୍ୟଥିତ
ଶରୀରରେ ଯନ୍ତ୍ରଣା ସାଂଗକୁ
ଦୁଃଶ୍ଚିନ୍ତା ବଢ଼ିଯାଏ
ସବୁ କିଛି ବିଷ ଭଳି ଲାଗେ
ଭୟ ଓ ଆଶଙ୍କାରେ ଦିନ ବିତୁଥାଏ ॥

ରୋଗୀଟି ଶଯ୍ୟାଶାୟୀ ହେଲେ
ପରର ଅଧୀନ ହେବାକୁ ହୁଏ,
ଜୀବନଟା ମରଣ ମରଣ ଲାଗେ
ମାନସିକ ଭାରସାମ୍ୟ ହରାଇ
ମୃତ୍ୟୁକୁ ସାମନା କରିବାକୁ
ସେ ରହିଁ ବସିଥାଏ ॥

ଶରୀର ବ୍ୟାଧିର ମଂଦିର
ଟିକିଏ ଅସାବଧାନତାରୁ
ଶରୀରରେ ରୋଗ ଦେଖାଦିଏ,

ଉପଶମ ଲାଗି ନାନା
ଉପଚାର ଲୋଡ଼ା ହୋଇଥାଏ ॥

ଯୋଗରେ ରୋଗ ଭଲ ହୁଏ
ଏହା ଔଷଧ ଭଳି କାମ କରେ
ନିୟମିତ ଯୋଗାଭ୍ୟାସ କଲେ
ଶରୀର ରୋଗମୁକ୍ତ ହୁଏ,
ଦେହରେ ଫୁର୍ତ୍ତି ଆସେ,
ମନ ପଫୁଲ୍ଲ ରହିବା ସାଂଗକୁ
ଅନ୍ତଃକରଣ ତା'ର ଶୁଦ୍ଧ ହୋଇଯାଏ ॥

ରୋଗ ଉପଶମ ପାଇଁ
କିଛି ଉପାୟ ନକରି ବସିରହିଲେ
ରୋଗ ଭିତରେ ଭିତରେ
ବଢ଼ିବଢ଼ି ଚାଲେ
ରୋଗକୁ ଶେଷ ନକରି ରଖିଲେ
ଅବସ୍ଥା ଅଣାୟତ ହୁଏ,
ଅଳ୍ପ ସମୟ ଭିତରେ
ରୋଗୀଟିକୁ ମୃତ୍ୟୁ ମୁଖକୁ
ଠେଲି ଦେଇଥାଏ ॥

ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି
ଭରା ଏ ସଂସାର

ଅଶେଷ ଯନ୍ତ୍ରଣା ଭୋଗେ
ଏଠି ଅକିଞ୍ଚନ ନର
ତଥାପି ଲୋଭରେ ସଦା
ଭାଳି ହେଉଥାଏ,
ଅନଳେ ପତଙ୍ଗ ଯେସନେ
ଛଟପଟ ହୁଏ ॥

ବ୍ୟାଧିଗ୍ରସ୍ତ ଶରୀରର
ନାନାବିଧ ଉପଚାର କର,
ସୁସ୍ଥ ଶରୀର ସହିତ
ଗଢ଼ ତୁମ ସୁଖର ସଂସାର ॥

୦ ୦



# ଭୋଜନ

ସୁସ୍ଥ ଶରୀର ପାଇଁ
ଉତ୍ତମ ଭୋଜନଟି ଲୋଡ଼ା
ଭୋଜନରେ ଆତ୍ମା ତୃପ୍ତ ହୁଏ
କ୍ରୋଧ ଜର୍ଜରିତ ମନକୁ ବି
ନିମିଷକେ ଶାନ୍ତ କରିଦିଏ ।।

ଶ୍ରଦ୍ଧାରେ ଭୋଜନ କଲେ
ଖାଦ୍ୟର ସ୍ୱାଦ ବଢ଼ିଯାଏ,
ସାଧାରଣ ଖାଦ୍ୟ ବି ସୁସ୍ୱାଦୁ ଲାଗେ
ପାଚକର ମନରେ ତାହା ଖୁସି ଭରିଦିଏ ।।

ସୁଷମ ଖାଦ୍ୟ ଶରୀରକୁ
ପରିପୁଷ୍ଟ କରେ
ସାତ୍ତ୍ୱିକ ଆହାର, ସତ୍‌ଚିନ୍ତା
ସତ୍‌କର୍ମର ମାର୍ଗ ଖୋଲିଦିଏ
ସୁସ୍ଥ ଶରୀରକୁ ନେଇ

ବ୍ୟକ୍ତିଟି ସବୁବେଳେ
ସଫଳତାର ସ୍ୱାଦ ପାଇଥାଏ ।।

ସ୍ୱଳ୍ପ ଆହାର ଉତ୍ତମ
ବିଦ୍ୟାର୍ଥୀର ଗୋଟିଏ ଲକ୍ଷଣ
ମାତ୍ରାଧିକ ଭୋଜନ
ଶରୀରକୁ ମାନ୍ଦା କରିଦିଏ,
ବିଦ୍ୟା ଅଧ୍ୟୟନରେ ବାଧା ସୃଷ୍ଟି କରେ
ନିଦ୍ରା ଆଳସ୍ୟରେ ସମୟ
ଚାହୁଁ ଚାହୁଁ ସରି ସରି ଯାଏ ।।

ଆପଦ ବିପଦରେ ବୃଦ୍ଧ
ଲୋକଟିର ଉପଦେଶ
ସବୁବେଳେ ଲୋଡ଼ା
କିନ୍ତୁ ଭୋଜନରେ ନୁହେଁ,
କାରଣ ବୃଦ୍ଧ ଲୋକଟି
ସବୁବେଳେ ସ୍ୱଳ୍ପାହାରରେ
ବଂଚିବାକୁ କହେ ।।

ପ୍ରକୃତି ଭେଦରେ ଭୋଜନ
ତିନିପ୍ରକାରର



ସାତ୍ତ୍ୱିକ ଭୋଜନ ଆୟୁ
ବଳ ସୁଖ ଓ ପ୍ରସନ୍ନତା
ବଢ଼ାଇବାବେଳେ ରାଜସିକ
ଭୋଜନ ଦୁଃଖ ଶୋକ ଓ
ରୋଗ ପ୍ରଦାୟକ ହୁଏ,
ତାମସିକ ଭୋଜନ ବାସି
ଉଚ୍ଛିଷ୍ଟ, ଦୁର୍ଗନ୍ଧମୟ
ତେଣୁ ଶରୀରକୁ ମୃତ୍ୟୁ
ମୁଖକୁ ଠେଲି ଦେଇଥାଏ ।।

୦ ୦

# ଦାୟିତ୍ୱ

ବାପାର ଦାୟିତ୍ୱ
ତା' ପିଲାମାନଙ୍କୁ ମଣିଷ କରିବା,
ଜୀବନଟା ଜଟିଳ
କେମିତି ଜିଇଁବାକୁ ହୁଏ ଏଠି
ପିଲାଦିନୁ ହାତଧରି ଓଠଧରି
ଶିଖେଇ ଦେବା ।।

ସ୍ୱାମୀର ଦାୟିତ୍ୱ
ସ୍ତ୍ରୀକୁ ରକ୍ଷା କରିବା,
ଇହକାଳ ପରକାଳର ସାଥୀସିଏ,
ଭଲରେ ମନ୍ଦରେ ତା'ର
ସାଥୀ ହୋଇଯିବା ।।

ପୁଅର ଦାୟିତ୍ୱ
ଏମିତି ଜୀବନ ଜିଇଁବ
ସାରା ସଂସାରଟା ପ୍ରଶଂସାରେ
ପୋତି ପକାଇବ ତା'
ବାପାକୁ ତା'ର କୃତ କର୍ମରେ,

ବାପାଙ୍କୁ ପରିଚିତ କରାଇବ
ତା ନାଁରେ ଦୁନିଆ ଭିତରେ ।।

ସ୍ତ୍ରୀହେଉଛି ସ୍ୱାମୀର ଅର୍ଦ୍ଧାଙ୍ଗିନୀ
ତା'ର ଦାୟିତ୍ୱ ହେଉଛି
ସ୍ୱାମୀର ସାଥୀଟିଏ ହୋଇ
ତା' ଜୀବନକୁ ସାର୍ଥକ କରିବା,
ସାଂସରିକ ଜଞ୍ଜାଳରୁ
ଯଥାସମ୍ଭବ ସ୍ୱାମୀକୁ
ମୁକ୍ତ କରିଦେବା ।।

ଆଜିର ପିଲାଟି
କାଲି ମାଆ କି ବାପା ହେବ,
ଦାୟିତ୍ୱ ନେବା ଦେଖିଥିଲେ
ଶିଖିଥିଲେ ସିଏ
ସଂସାର ଭିତରେ ଘର କରି
ପଥର ପଡ଼ିଲେ ବି
ସହିନେବାକୁ ସମର୍ଥ ହୋଇବ ।।

୦ ୦

# ବିଷାଦ

ବିଷାଦରେ ଦେହମନ
ହୁଅଇ ଅସ୍ଥିର
ଅଂଗପ୍ରତ୍ୟଙ୍ଗ ହୁଅଇ ଶିଥିଳ
ପାଟି ଶୁଖି ଶୁଖି ଯାଏ
ଶରୀରରେ କଂପନ
ସୃଷ୍ଟି ହୁଏ,
ରୋମ ଟାଙ୍କୁରି ଉଠେ
ଶରୀରକୁ ବିବଶ କରାଏ ॥

ବିଷାଦଗ୍ରସ୍ତ ମନ
ଭାଂଗିଯାଏ ଭିତରେ ଭିତରେ
ସନ୍ତାପିତ ହୃଦୟ ବିଳପି ଉଠେ
ଅଜଣା ଅସହାୟତାରେ ॥

ବିଷାଦରେ ବ୍ୟକ୍ତିଟି
ଧୈର୍ଯ୍ୟହରା ହୁଏ

ତା’ ଭିତରେ ବିପରୀତ
ଲକ୍ଷଣ ସବୁ ପ୍ରକାଶ ପାଏ
ଅଜଣା ଆଶଙ୍କାରେ
ସେ ହୁଏ ଜର୍ଜରିତ,
ବଂଚିବାର ମୋହ ତୁଟିଯାଏ
ମୃତ୍ୟୁ ଦ୍ୱାରା ହୁଏ କବଳିତ ॥

ଆନନ୍ଦ ଉଲ୍ଲାସରେ
ଉତ୍‌ଫୁଲ୍ଲିତ ନ ହେବା
ଦୁଃଖ ଓ ବିଷାଦରେ
ଭାଂଗି ନ ପଡ଼ିବା
ସ୍ଥିତପ୍ରଜ୍ଞ ବ୍ୟକ୍ତିର ଲକ୍ଷଣ
ବିମର୍ଷ ଚିତ୍ତରେ ଦୀର୍ଘଦିନ ବାସ
ବିନାଶକୁ କରେ ନିମନ୍ତ୍ରଣ ॥

ବିଷାଦ ଯୋଗୁଁ ବ୍ୟକ୍ତିଟି
କାପୁରୁଷତାରେ ହୁଅଇ ଆବିଷ୍ଟ
ବିଷମ ସମୟ ଆସି
ଜୀବନକୁ କରେ ନଷ୍ଟଭ୍ରଷ୍ଟ
ଆଶା ଓ ଭରସା ନ ପାଇଲେ
ବଂଚିବା କଷ୍ଟକର ହୁଏ

ହୃଦୟଟା ଦିନକୁ ଦିନ ଦୁର୍ବଳରୁ
ଦୁର୍ବଳତର ହୋଇଯାଇଥାଏ ।

ସୁଖଦୁଃଖରେ ସମଭାବାପନ୍ନ ହୋଇ
ପରିସ୍ଥିତିର ଉଚିତ ମୁକାବିଲା କର ।
ମନରୁ ବିଷାଦ ଆପେ ଆପେ
ଦୂରେଇ ଯିବ, ପରମାତ୍ମାଙ୍କ ପାଖରେ
ମନକୁ କରିଲେ ନିଶ୍ଚଳ ।।

○ ○

# ଶରୀର

ଏଡ଼େ ସୁନ୍ଦର ଏ ମଣିଷ ଶରୀର
ଏ ଭଗବାନଙ୍କ ସୃଷ୍ଟି ତ ନିଶ୍ଚୟ
ତା'ର ହେପାଜତ ଆମ ହାତରେ
ଶରୀରକୁ ସୁସ୍ଥ ରଖିଲେ
ମନ ପ୍ରଫୁଲ୍ଲ ରହେ
କର୍ମରେ ମନ ବଳେ
କର୍ମ ହିଁ ଭଗବାନ,
କର୍ମ ହିଁ ଜୀବନ ।।

ଶରୀରକୁ ସୁସ୍ଥ ରଖିବାର
ଉପାୟ ହେଉଛି ସାଧନା
ଯୋଗ ସାଧନା ସବୁଠୁ ଉତ୍ତମ,
ରୋଗ ପାଇଁ ଯୋଗ
ଅଟିରେ ଅନେକ ରୋଗ
କରେ ଉପଶମ ।।

ମଣିଷ ଅଭ୍ୟାସର ଦାସ
ଯୋଗଶିକ୍ଷା ଓ ଯୋଗାଭ୍ୟାସ



ଆଣେ ଶରୀରରେ ଆନନ୍ଦ ଉଲ୍ଲାସ
ନିଜକୁ ସୁସ୍ଥ ରଖିବା ସହିତ
ପରିବାରର ସୁସ୍ଥତା ହୁଏ
ଜୀବନରେ ଲୋଡ଼ା
କେହି ଜଣକର ଅସୁସ୍ଥତାରେ
ଆଖିରୁ ନିଦଯାଏ ହଜି,
ଚିନ୍ତାରେ ଚିନ୍ତାରେ ମୁଣ୍ଡ ଘୂରିଯାଏ
ଶାନ୍ତିରେ ଟିକେ ହୁଏନାହିଁ ବଂଚି ।।

ଯୌବନରେ ଶରୀର ଦିଶଇ ସୁନ୍ଦର
ଉତ୍ତମ କୂଳରେ ଜାତ ବ୍ୟକ୍ତିର
ଭରିଯାଏ ମନେ ଅହଂକାର,
ବିଦ୍ୟାବୁଦ୍ଧି ନଥିଲେ ତାହାର
ସବୁଠି ସେ ହୁଏ ହତାଦର ।।

ସେବା ଯଦି ଜୀବନର ବ୍ରତ ହୁଏ
ତା'ପାଇଁ ଦରକାର
ନିର୍ମଳ ମନ ଓ ସୁସ୍ଥ ଶରୀର,
ଜୀବନଟା ପରିପୂର୍ଣ୍ଣ ଲାଗେ
ସେବାକୁ କଲେ ଆପଣାର ।।

ହାତ ଥାଇ ଯଦି ନ କରିଲ ଦାନ
କାନ ଥାଇ ଯଦି ନ ଶୁଣିଲ ଜ୍ଞାନ
ଆଖିରେ କଲନାହିଁ ସାଧୁଙ୍କୁ ଦର୍ଶନ



ପାଦ ଥାଇ ଯେବେ ତୀର୍ଥକୁ ଗଲନି
ଅନ୍ୟାୟ ଅର୍ଥ ଅର୍ଜି ବୋଲାଇଲ ଧନୀ
ସେ ଶରୀର ଥାଇ କିବା ଲାଭ
ସେ ଜୀବନେ ସୁଖ କି ସମ୍ଭବ !

ଜୀବଦ୍ଦଶାରେ ଧନ ଚାଲିଗଲା ପରେ
ତାକୁ ପୁଣିଥରେ ଅର୍ଜି ହୁଏ
ମିତ୍ର ରାଗିଯାଇଥିଲେ ବ୍ୟକ୍ତିଟି ତାକୁ
କୌଣସି ଉପାୟରେ ମନେଇ ଦିଏ
ପତ୍ନୀଟି ଛାଡ଼ି ପଳାଇଲା ପରେ
ଦ୍ୱିତୀୟ ପତ୍ନୀଟିଏ ଅଣାଯାଇପାରେ
ଜମିବାଡ଼ି ଥରେ ହାତଛଡ଼ା ହେଲାପରେ
ପୁନର୍ବାର କିଣାଯାଇପାରେ
ମାତ୍ର ଶରୀର ଥରେ ସଂଗ ତ୍ୟାଗ କଲେ
ଆଉ ମିଳେ ନାହିଁ ।
ମୃତ୍ୟୁପରେ ସେ ଶରୀର
ଦେଖିବାକୁ ଆଉ ନ ମିଳଇ ।।

ଶରୀର ମାଦ୍ୟଂ ନୀତିରେ
ଶରୀରକୁ କର ପରିପୁଷ୍ଟ
ସେବାଧର୍ମ ଆପଣାଅ
ହୁଅ ପ୍ରଭୁଙ୍କ ନିକଟ ।।

୦ ୦

# ଅବସୋସ

ସାରା ଜୀବନ ବିତାଇ ଦେବାପରେ
ଶେଷ ମୁହୂର୍ତ୍ତରେ ଯାହାକିଛି
ଥାଏ ଅବସୋସ
ସେ ସବୁ ଚିନ୍ତା ଓ ଚେତନାରେ ଆସେ
ଆଉ ସମୟ ନଥାଏ
ସେ ସବୁକୁ ସୁଧାରି ନେବାକୁ,
ଦେହରେ କି ମନରେ ଶକ୍ତି ନ ଥାଏ
ବାସ୍ତବତାକୁ ସାମ୍ନା କରିବାକୁ ।।

ଜୀବନଟା କଟିଗଲା "ଲୋକେ କ'ଣ ଭାବିବେ"କୁ
ଡରି ଡରି, ମନକୁ ଆୟତ୍ତରେ ରଖି
ଲୋକ ଲଜ୍ଜ୍ୟାକୁ ଭୟକରି
ସବୁ କାମ କରିବାକୁ ହେଲା,
ଯାହା ଯାହା କରିଥିଲେ ଭଲ ହୋଇଥା'ନ୍ତା
ସେଗୁଡ଼ିକ ହୋଇ ନପାରି
ସେମିତି ରହିଗଲା ।।



ବାପାମାଆଙ୍କୁ ମନଖୋଲି
କହିପାରିଲିନି ଯାହା ମୁଁ ଚାହୁଁଥିଲି
କି କରିପାରିଲିନି
ସେମାନେ ଯାହାସବୁ ଚାହୁଁଥିଲେ
ବାଟରେ ବହୁ ବାଧାବିଘ୍ନ
ଭାଇ, ଭଉଣୀଙ୍କୁ ମନ ଖୋଲି
ସ୍ନେହଟିକେ ବି ଦେଇପାରିଲିନି,
କି ସେମାନଙ୍କ ସାହାଯ୍ୟକୁ
ସ୍ୱୀକାର କଲିନି ।।

ମିଠା ମିଠା କଥା କେଇପଦ
କହି ସ୍ତ୍ରୀର ମନ ତୋଷିବାକୁ
ମୋ ପାଖେ ବି ସମୟ ନଥିଲା
ସେଠାରୁ ପଳାଇଯିବାର ଅପଚେଷ୍ଟା
ମୋତେ ବାରମ୍ବାର ଦଂଶନ କରୁଥିଲା ।।

ଦିନେ ମୋର ସବୁଠାରୁ
ପ୍ରିୟ ଥିବା ବଂଧୁମାନଙ୍କୁ
ମୁଁ ଧୀରେ ଧୀରେ ଅହଂକାର ଯୋଗୁଁ
ଦୂରେଇ ଦେଇଥିଲି
ବିପଦରେ ସାହାଯ୍ୟ କରିଥିବା
ବଂଧୁମାନଙ୍କୁ ବି କାଳକ୍ରମେ
ମୁଁ ଭୁଲିଯାଇଥିଲି
ଏସବୁ ଏବେ ମୁଁ ଭାବୁଛି,

ସମୟ ହାତରେ ବଂଦୀ ହୋଇ
ସେସବୁ ଦିନଗୁଡ଼ିକୁ ମୁଁ
ଏବେ ହିଁ ଝୁରୁଛି ॥

ନିଜକୁ ନିଜେ ଖୁସି ରଖିବାର
ପ୍ରୟାସ କେବେ ମୁଁ କରିନି
ବିଷୟ ବାସ୍ନାରେ ଯୋଡ଼ିହୋଇ
ସେଥିପାଇଁ ସମୟ କେବେବି ପାଇନି
ଏସବୁ ଅବସୋସ ମୋର
ଏଇ ଶେଷ ଅବସ୍ଥାରେ,
ଆଉ ଭାବିଲେ କି ଲାଭ
ଚୋର ପଳାଇଲେ ବୁଦ୍ଧି
ବାହାରିବା ଭଳି ଏ ଅନ୍ତିମ ବେଳାରେ ॥

○ ○

# ଅବିନାଶୀ

ସେ ଆସନ୍ତି ଅନୁଭବରେ
ସବୁ କର୍ମ ହୁଏ ନିୟନ୍ତ୍ରିତ
ସେ କେଉଁ ଅତିଥି ନୁହନ୍ତି
ମୋ ମନରେ ସଦା ବିରାଜିତ
ଅବିନାଶୀ ଆତ୍ମା ଚିର ଅମଳିନ,
ସିଏ ମୋର ପ୍ରଭୁ ପୁଣି ସିଏ ଭଗବାନ ॥

ତାଂକୁ ଅର୍ପିଦେଲେ ଖାଦ୍ୟ
ତାହା ହୋଇଯାଏ ପ୍ରସାଦ
ତାଂକୁ ଆରାଧନା କଲେ
ଭକ୍ତି ହୋଇଯାଏ ନୈବେଦ୍ୟ
ମୋର ଆଶା : ତାଙ୍କର ଆଶ୍ୱାସନା
ମୋର ଭାଗ୍ୟ : ତାଙ୍କର କରୁଣା
ମୋର ନିଃଶ୍ୱାସ : ତାଙ୍କର ଉପସ୍ଥିତି
ମୋର ବିଶ୍ୱାସ : ଏକ ଚେତନାର ଶକ୍ତି
ସିଏ ଏକ ଫୁଟିଥିବା ଫୁଲର ମହକ
ସିଏ ପୁଣି ଅମଳିନ କଳାର କୁହୁକ ।

୦୦



# ଏକା ଏକା

ଆସିଥିଲି ଏକା ମୁହିଁ
ଚାଲିଯିବି ଏକା
କେହି ନଥିବେ ପଥକୁ
ହୋଇ ମୋର ସଖା ।।

ବାପା ମାଆ ଭାଇଭଉଣୀକୁ
ମୋଠାରୁ କାହିଁ ମୁଁ ଦୂରେଇଦିଏ
ଏକୁଟିଆ ବଂଚି ରହିବାକୁ
କାହିଁକି ମୁଁ ଭଲପାଏ
ବେଳେବେଳେ ଭାବିବସେ
ଏ ସଂସାର କ'ଣ ଖାଲି ମୋ ପାଇଁ,
ଏଠି ସବୁ ଦିଶୁଛନ୍ତି ପର
ନିଜର ବୋଲି ମୋର
କ'ଣ କେହି ଜଣେ ନାହିଁ ।

ସୁଆଦିଆ ଜିନିଷଟେ
ଏକୁଟିଆ ଖାଇବାକୁ

କାହାକୁ ବି ଭଲ ଲାଗେ ନାହିଁ
ଏକାକୀ ଅର୍ଥ ଚିନ୍ତାକଲେ
ମନରେ ଶାନ୍ତି ନ ମିଳଇ
ଏକୁଟିଆ ବାଟ ଚାଲିଲେ
ମନ ଖାଲି ଖୋଜୁଥାଏ ସାଥୀ,
ଅନ୍ୟମାନେ ଶୋଇଥିବାବେଳେ
ମୋର କାହିଁ ପାହିଯାଏ ରାତି ।।

କେହି ନ ଥିଲେ ପ୍ରଭୁ
ତୁମେ ତ ଅଛ
ଏଠି ସେଠି ସବୁଠି
ତୁମେ ତ ଜାଣିଛ
ମୁଁ କରିଥିବା ପାପସବୁ ଓ
ପୁଣ୍ୟ ବି କେତେ ମୁଁ ଅର୍ଜିଛି,
ତୁମେ ତ ଜାଣିଛ ମୋ ଅନ୍ତର କଥା
ହୃଦୟରେ ତୁମ ପାଇଁ
କେତେ ଯାଗା କେବେଠାରୁ
ମୁଁ ସାଇତି ରଖିଛି ।।

ମୋ ଭଳି ତୁମେ ବି ତ
ଏକା ହେ ଈଶ୍ୱର
ତୁମେ ରାମ ତୁମେ କୃଷ୍ଣ

ତୁମେ ଯୀଶୁ ତୁମେ ମହମ୍ମଦ
ଭିନ୍ନ ତୁମ ବେଶ ସିନା
ସବୁ ଧର୍ମ ତୁମ ପାଖେ ଏକ,
ସିଏ ତ ମାନବ ଧର୍ମ
ତେଣୁ ତୁମେ ଏକରେ ଅନେକ ।।

ଏସବୁ ଭାବନାରୁ
ମୋତେ ପ୍ରଭୁ ରକ୍ଷାକର
ଏକୁଟିଆ ବଂଚିବାଟା
ମୋ ପାଇଁ ଯନ୍ତ୍ରଣା ଦାୟକ
ଏଭଳି ଜୀବନରୁ ମୁକ୍ତି ଚାହେଁ
ମୋ ଜୀବନ ଯାକ ।।

୦ ୦

# ପାଣିର ଗାର

ମନେ ରଖିବାର ଶକ୍ତି ତ ଦେଇଛ
ଭୁଲିଯିବାର ଶକ୍ତି ଟିକକ ବି ଦିଅ ।
ବେଳ ଅବେଳରେ ଯଦି କେବେ
କାହା ପିଠିରେ ହାତ ଥାପୁଡ଼ାଏ
ଆଶ୍ରାର ଆଶାବାଡ଼ିଟିଏ ଧରେଇ ଦିଏ
ପୁଣି ମୁଁ ରହୁଥିବା କାଚଘରଟିକୁ
କିଏ ଟେକାମାରି ଯେବେ
ଭାଂଗି ଦେବାକୁ ଚେଷ୍ଟା କରେ
ଏ ଦୁହିଁଙ୍କୁ ଦିଏ ମୁଁ ପାଶୋରି
ପାଣିରେ ଗାରଟିଏ ଟାଣିଦେଲା ପରି ।

୦ ୦

# ବେଳ ଥାଉଁ

ଅସଂଖ୍ୟ ଅନୁଭୂତିର ସାଥୀ
ଏହି ବୃଦ୍ଧାବସ୍ଥାର ଦୃଢ଼ ଅଭିବ୍ୟକ୍ତି
କଂପିତ ସ୍ୱର, ବୁକୁଥରା କୋହ
ମଳିନ, ନିଷ୍ପ୍ରଭ ମୁଖମଣ୍ଡଳ
ଟଳମଳ ପାଦ ଓ ଚମଲୋଚାକୋଚା ଦେହ
ମୋତେ ବିସ୍ମୟ ଚକିତ କରେ,
ଅବସ୍ଥାର ଅଭିସାର ଗଢ଼ା ହୁଏ
ଦେହରେ, ମନରେ, ସ୍ନାୟୁରେ ଓ
ଦୁର୍ବଳ ମାନସିକତାରେ ।।

ହାତ ପାହାନ୍ତାରେ ସୁଯୋଗକୁ
ହାତଛଡ଼ା କଲେ
ଆଜିକୁ କାଲିର ଶେଯରେ
ଶୁଆଇ ଦେଲେ
ବୃଦ୍ଧାବସ୍ଥା ଛଟପଟ ହେବ,
ବେଳ ଥାଉଁ ଥାଉଁ ସଜାଗ ନ ରହିଲେ
ନ ଆସିବା ଦୁଃଖ ତ ନିଶ୍ଚୟ ଆସିବ ।।

୦୦



# ମୁଁ ଓ ମୋର

ଏ ଦେହ କାହା ପାଇଁ
ମୋ ନିଜର ନା ଆଉ କାହାର ?
ଅନେକ ପ୍ରଶ୍ନ ନିଜକୁ ପଚାରେ
ଉତ୍ତର କିଂତୁ ପାଏନି
ଅନ୍ଧଟିଏ ଦେଖେ : କେତେ ଭଲ ହୁଅନ୍ତା
ତା'ର ଚକ୍ଷୁ ହୋଇଗଲେ
ଛୋଟାଟିଏ ଦେଖେ : କେତେ ଭଲ ହୁଅନ୍ତା
ତା'ର ଗୋଡ଼ ହୋଇଗଲେ
ମୁକଟିଏ ଦେଖେ : କେତେ ଭଲ ହୁଅନ୍ତା
ତା'ର ଭାଷା ହୋଇଗଲେ
ବଧିରଟିଏ ଦେଖେ : ଭାରି ଭଲ ହୁଅନ୍ତା
ତା'ର କାନ ହୋଇଗଲେ
ମୋ ଭିତରେ 'ମୁଁ' ଓ 'ମୋର'କୁ ଦେଖେ : କେତେ
ଭଲ ହୁଅନ୍ତା ସେମାନଙ୍କୁ ହତ୍ୟା କରିଦେଲେ
ସବୁ ପ୍ରଶ୍ନର ଉତ୍ତର ମିଳିଯା'ନ୍ତା
ସବୁ ସମସ୍ୟାର ଅନ୍ତ ହୋଇଯା'ନ୍ତା ।

୦ ୦



# କର୍ମଯୋଗୀ

କର୍ମକୁ ଯେ କରେ
ଜୀବନର ବ୍ରତ
ଯାହାଙ୍କ କର୍ମର ଆରମ୍ଭ
ସଂକଳ୍ପ ଓ କାମନାରୁ ମୁକ୍ତ
ସମସ୍ତ କର୍ମ ଯାହାଙ୍କର
ଜ୍ଞାନାଗ୍ନୀରେ ହୁଏ ଭସ୍ମୀଭୂତ
ସେ ହିଁ କର୍ମଯୋଗୀ ବୋଲାନ୍ତି,
ଅନାସକ୍ତ ହୋଇ
ଇନ୍ଦ୍ରିୟ, ଶରୀର, ମନ ଓ ବୁଦ୍ଧି ଦ୍ୱାରା
ଅନ୍ତଃକରଣକୁ ଶୁଦ୍ଧ କରିଥା'ନ୍ତି ॥

ସିଏ ନିତ୍ୟସନ୍ୟାସୀ
କାହିଁକି ନା ଦ୍ୱନ୍ଦ୍ୱାତୀତ
କାହା ପ୍ରତି ଦ୍ୱେଷ ନାହିଁ
ସିଏ ଆକାଂକ୍ଷାରହିତ,
ନିଜର ଶରୀର ନିଜ ଦ୍ୱାରା
ହୁଏ ବଶୀଭୂତ ॥



କର୍ମ କରି ମଧ୍ୟ ସେ
ସେଥିରେ ହୁଅନ୍ତିନି ଲିପ୍ତ
ସମସ୍ତ କର୍ମ ତାଂକର
ପରମାତ୍ମାଙ୍କୁ କରନ୍ତି ଅର୍ପଣ,
କର୍ମଫଳ ତ୍ୟାଗକରି
କରନ୍ତି ଶୁଦ୍ଧ ଆଚରଣ ॥

କର୍ମର ଗତି ଅତି ଗହନ
ତାକୁ ବୁଝିବା ଦୁଷ୍କର,
କର୍ମଯୋଗୀଟିଏ ପରି
ସଭିଏଁ କର କର୍ମକୁ ଆଦର ॥

୦୦

# ଭକ୍ତିଯୋଗୀ

ଭକ୍ତିରେ ବଂଧା ଭଗବାନ
ତୋଷନ୍ତି ଭକ୍ତଙ୍କର ମନ
ସଗୁଣ ସାକାରଯୁକ୍ତ ପରମାତ୍ମାଙ୍କର
କଲେ ଉପାସନା,
ସେଭଳି ଭକ୍ତମାନେ
ସର୍ବଶ୍ରେଷ୍ଠ ଯୋଗୀରୂପେ
ହୋଇଥା'ନ୍ତି ଗଣା ।।

ଅନ୍ୟକେତେ ଭକ୍ତ
ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ
ଆରାଧନା କରି ହୋଇଥା'ନ୍ତି ତୃପ୍ତ,
ଇନ୍ଦ୍ରିୟ ସଂଯମ କରି
ସମବୁଦ୍ଧି ସମ୍ପନ୍ନ
ସେହି ଭକ୍ତିଯୋଗୀ
ଅଦୃଶ୍ୟ ଅବ୍ୟକ୍ତ ବ୍ରହ୍ମଙ୍କୁ
ହୋଇଥା'ନ୍ତି ପ୍ରାପ୍ତ ।।

ସେହି ସାଧକ ମାନଙ୍କର
ଚିତ୍ତ ଅବ୍ୟକ୍ତ ପ୍ରତି ଆସକ୍ତ
ଓ ସେମାନେ ସାଧନାରେ
ବହୁ କ୍ଳେଶ ଭୋଗିଥା'ନ୍ତି,
ପରମାତ୍ମାଙ୍କ ଠାରେ ମନ ସ୍ଥିରକରି
ବୁଦ୍ଧି ନିବେଶ କରି
ମୃତ୍ୟୁରୂପକ ସଂସାର ସାଗରକୁ
ପାର ହୋଇଥା'ନ୍ତି ॥

ଅଭ୍ୟାସ ଯୋଗ ଦ୍ୱାରା
ଭକ୍ତିଯୋଗୀଟି ପରମାତ୍ମାଙ୍କ ପାଖରେ
ନିଜକୁ ସ୍ଥିର କରିଦିଏ,
କର୍ମ ପରାୟଣ ଓ ଯୋଗର
ଆଶ୍ରିତ ହୋଇ ସେ
ସାଧନାରେ ସିଦ୍ଧିପ୍ରାପ୍ତ ହୁଏ ॥

ପଦ୍ମପତ୍ରରେ ଜଳବିନ୍ଦୁ
ଢଳଢଳ ହେଲାପରି
ଭକ୍ତିଯୋଗୀଟି ପାପରେ
ଲିପ୍ତ ହୁଏ ନାହିଁ,
ସମସ୍ତ କର୍ମକୁ ତା'ର
ଆସକ୍ତି ତ୍ୟାଗ କରି
ପରମାତ୍ମାଙ୍କୁ ଅର୍ପି ଦେଇଥାଇ ॥

ଦ୍ୱେଷ ଭାବଶୂନ୍ୟ, ମିତ୍ର ଭାବାପନ୍ନ
ଅହଂକାର ରହିତ, ସମଭାବାପନ୍ନ
କ୍ଷମାଶୀଳ, ଶରୀର ସଂଯମୀ
ନିରନ୍ତର ସନ୍ତୁଷ୍ଟ ଦୃଢ଼ ନିଶ୍ଚୟୀ ଯୋଗୀ
ପରମାତ୍ମାଙ୍କ ପାଖରେ
ମନ, ବୁଦ୍ଧି ଅର୍ପଣ କରିଥାଏ,
ସେହି ଶ୍ରଦ୍ଧାଶୀଳ ଆସକ୍ତିରହିତ
ଭକ୍ତଟି ପରମାତ୍ମାଙ୍କର
ଅତି ପ୍ରିୟ ହୋଇଯାଏ ॥

୦ ୦

# ଜ୍ଞାନଯୋଗୀ

ଯେଉଁ ବ୍ୟକ୍ତି କର୍ମରେ
ଅକର୍ମକୁ ଦେଖେ ଓ
ଅକର୍ମରେ କର୍ମକୁ ଦେଖିବାକୁ ପାଏ
ତାକୁ ହିଁ ମନୁଷ୍ୟମାନଙ୍କ ଭିତରେ
ବୁଦ୍ଧିମାନ ଓ ଯୋଗୀ କୁହାଯାଏ ।।

ପୁଣି ଯାହାଙ୍କର ସମସ୍ତ କର୍ମ
ସଂକଳ୍ପ ଓ କାମନାରୁ ମୁକ୍ତ
ସମସ୍ତ କର୍ମ ଜ୍ଞାନ ଭଳି
ଅଗ୍ନୀରେ ହୁଏ ଭସ୍ମୀଭୂତ,
ସେଭଳି ବ୍ୟକ୍ତି ଜ୍ଞାନଯୋଗୀ
ବୋଲି ଜଗତରେ ଖ୍ୟାତ ।।

ଜ୍ଞାନଯୋଗୀ ସର୍ବଦା
ହୋଇଥା'ନ୍ତି ଆସକ୍ତି ରହିତ
ତାଂକର ବୁଦ୍ଧି ବ୍ରହ୍ମଜ୍ଞାନରେ

ଲିପ୍ତ ରହେ ଓ ସମସ୍ତ କର୍ମ
ଯଜ୍ଞ ଉଦ୍ଦେଶ୍ୟରେ
ସମର୍ପିତ ହୋଇ
ଲୀନ ହୋଇଯାଏ ॥

ଇନ୍ଦ୍ରିୟ ଗୁଡ଼ିକର ଓ
ପ୍ରାଣମାନଙ୍କର କ୍ରିୟାସବୁ
ଜ୍ଞାନରୁ ଉଦ୍ଭବ ହୋଇ
ଆତ୍ମ୍ ସଂଯମ ଯୋଗ
ରୂପକ ଅଗ୍ନୀରେ
ଆହୁତି ହୋଇଥା'ନ୍ତି,
ଏଭଳି ଯଜ୍ଞକୁ ସ୍ୱାଧ୍ୟାୟରୂପକ
ଜ୍ଞାନଯଜ୍ଞ ହିଁ କହନ୍ତି ॥

ଦ୍ରବ୍ୟମୟ ଯଜ୍ଞଠାରୁ
ଜ୍ଞାନଯଜ୍ଞ ଶ୍ରେଷ୍ଠ ବୋଲାଯାଏ
ସମସ୍ତ କର୍ମ ଓ ପଦାର୍ଥ
ତତ୍ତ୍ୱଜ୍ଞାନରେ ଲୀନ ହୋଇଯାଏ
ତତ୍ତ୍ୱଜ୍ଞାନକୁ ଅନୁଭବି
ଯୋଗୀ ମୋହଗ୍ରସ୍ତ ହୁଅନ୍ତି ନାହିଁ,
ପରମାତ୍ମାଙ୍କୁ ଦର୍ଶନ କରନ୍ତି

ଜ୍ଞାନରୂପୀ ନୌକାଦ୍ୱାରା
ପାପ ସମୁଦ୍ରକୁ ପାର ହୋଇଯାଇ ॥

ଜ୍ଞାନଯୋଗୀ ଜିତେନ୍ଦ୍ରିୟ
ସାଧନା ପରାୟଣ ଓ
ଶ୍ରଦ୍ଧାବାନ ହୁଅନ୍ତି,
ଜ୍ଞାନଲାଭ କରି ସେ
ପରମଶାନ୍ତି ଲାଭ କରିଥା'ନ୍ତି ॥

୦ ୦

# ସମସ୍ୟା

ସମସ୍ୟା ନ ଥିଲେ ଜୀବନ
ଜୀବନ ଭଳି ଲାଗେନି
ସମସ୍ୟାରେ ଭାଂଗି ନ ପଡ଼ି
ତାର ସାମ୍ନା କଲେ
ସମାଧାନର ସୂତ୍ର ବାହାରେ
ଗୋଟିଏ ପରେ ଗୋଟିଏ
ସମସ୍ୟାର ଅନ୍ତ ଘଟିଥାଏ,
ଧୈର୍ଯ୍ୟହରା ହେଲେ
ଦୁଃଖ ଜର୍ଜରିତ ହୋଇ
ବ୍ୟକ୍ତିଟି ଛଟପଟ ହୁଏ ।।

ସମସ୍ୟା ଆସିଲେ ତାକୁ
ସାଥୀ କରିଦିଅ
ସିଏ ଆଉ ଦୁଃଖ ଦେବନି
ତା' ସହିତ ପାଦ ମିଳାଇ
ଅଗ୍ରସର ହେଲେ ସିଏ
ବଂଧୁତାର ହାତ ବଢ଼ାଇବ,



ସବୁ କାମ ଧୀରେ ଧୀରେ
ସମାହିତ ହେବ ।।

ସୁଖ ଦୁଃଖ ଚକ୍ରପରି ଘୁରୁଛନ୍ତି
ସୁଖ ପରେ ଦୁଃଖ ଆସିବା
କଥା ହିଁ ଆସିବ
ଧୈର୍ଯ୍ୟର ବାଡ଼ିଟିଏ ଧରି
ଦୁଃଖର ଦୁର୍ଗମ ରାସ୍ତାକୁ
ଅତିକ୍ରମ କରିବାକୁ ହେବ

ସଂସାରରେ ସମସ୍ୟା ବହୁବିଧ
ଦେହର ସମସ୍ୟା, ପରିବାରର ସମସ୍ୟା
ଚାକିରି ସମସ୍ୟା, ସଂପତ୍ତି ସମସ୍ୟା
ଆଦିରେ ବ୍ୟକ୍ତିଟି ଅହରହ
ବ୍ୟତିବ୍ୟସ୍ତ ହୁଏ,
ଜଂଜାଳମୟ ଜୀବନକୁ ତାର
ସମସ୍ୟା ସବୁ ଜାଳି ପୋଡ଼ି ଦିଏ ।।

ସମସ୍ୟା ଘେରରେ ସମାଜ
ଆଜି ବିଚଳିତ ହୁଏ,
ପରିସ୍ଥିତି ଓ ଅବସ୍ଥାକୁ
ଆପଣାଇ ଆଗେଇ ଚାଲିଲେ
ସମାଧାନର ବାଟ ଆପେ ଆପେ ଫିଟିଯାଏ ।।

୦ ୦

## ଉଦ୍ୟମ

ଯେକୌଣସି କାର୍ଯ୍ୟ ନିଷ୍ଠାର
ସହିତ ସଂପାଦନ କରିବା ପାଇଁ
ନିଜର ଉଦ୍ୟମ ଦରକାର
ଉଦ୍ୟମ ନ ଥିଲେ ସଫଳତା ନାହିଁ,
ହେଲା କର୍ମଟି ନହୋଇ
ଅସଂପୂର୍ଣ୍ଣ ହୋଇ ରହିଯାଏ
ସବୁଦିନ ପାଇଁ ।।

ସବୁପ୍ରକାର ଉଦ୍ୟମ ଭିତରେ
ଆତ୍ମୋଦ୍ୟମ ସର୍ବୋତ୍କୃଷ୍ଟ
ଆମେ ସମସ୍ତେ ପରମାତ୍ମାଙ୍କ
ଅଂଶ ଭାବି ସାଧନା ନ କରିବା ମୂର୍ଖାମି
ସାଧନା ନ ଥିଲେ ସିଦ୍ଧି ମିଳେ ନାହିଁ,

ସିଦ୍ଧି ନ ମିଳିଲେ ଜୀବନ
ନିରର୍ଥକ ହୁଏ ପୂର୍ଣ୍ଣତା ନ ପାଇ ।।

ମଞ୍ଜିଟି ଭିତରେ ଗଛଟିଏ ଥାଏ
ଗର୍ବ ଅହଂକାର ବୋଝେଇ କରି
ମଞ୍ଜିଟି ମାଟି ଭିତରକୁ ନ ଗଲେ
ଗଛଟି ସୃଷ୍ଟି ହୁଏ ନାହିଁ କି
ସେଥିରେ ଫୁଲ ଫଳ ଧରେ ନାହିଁ
ଗଛଟିଏ ପାଇବାକୁ ହେଲେ
ମଞ୍ଜିଟିକୁ ମାଟିତଳକୁ ନେବାର
ଉଦ୍ୟମ କରିବାକୁ ହେବ,
ଏଥିରେ ବ୍ୟତିକ୍ରମ ହେଲେ
ସ୍ୱପ୍ନଟି ସ୍ୱପ୍ନରେ ରହିବ ।।

ଖାଦ୍ୟକୁ ଦେଖି ପେଟ ପୂରିଯାଏ ନାହିଁ
କି ଶରୀରରେ ଶକ୍ତି ଆସେ ନାହିଁ
ପେଟ ପୂରିବା ପାଇଁ ଖାଦ୍ୟକୁ ପେଟ ଭିତରକୁ
ନେବାର ଉଦ୍ୟମ କରିବା ଦରକାର
ଏଥିରେ ବ୍ୟତିକ୍ରମ ସବୁ ଅନର୍ଥ ସୃଷ୍ଟିକରେ,

ବ୍ୟକ୍ତିଟି ଯାତନା ଭୋଗୀ ଥାଏ
ଭୋକିଲା ପେଟରେ ।।

ପ୍ରତିଟି କାର୍ଯ୍ୟକୁ ନିଷ୍ଠା ଓ
ଆତ୍ମୋଦ୍ୟମ ଦ୍ଵାରା ସଂପାଦନ କର
ଏଥିରେ ମିଳିବ ସଫଳତା
ଖୋଲିଯିବ ଦ୍ଵାର ପୂର୍ଣ୍ଣତା ପ୍ରାପ୍ତିର ।।

୦ ୦

## କବିଙ୍କର ସାରସ୍ୱତ ସୃଷ୍ଟିସମ୍ଭାର

୧- ସମୟର ସ୍ୱର
୨- ଆହତ ଉପତ୍ୟକା
୩- ବିବର୍ଣ୍ଣ ବସୁଧା
୪- ସାଇନାମ କେବଳମ୍
୫- ଜହ୍ନ ଜହ୍ନ ମନ
୬- ଝରି ଝୁରିଯାଏ
୭- ଫର୍ଚ୍ଚା ଖୋଜୁଖୋଜୁ
୮- ଥାକେ ବାସ୍ନା ଜହ୍ନରାତି
୯- ଶ୍ରୀ ଜଗନ୍ନାଥ ଭଜନ ଶତକ
୧୦- ଫେରିବା ବାଟରେ



କବି ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ କାବ୍ୟ ଜଗତରେ ଜଣେ ସଫଳ ରୂପକାର । ଜୀବନଧର୍ମୀ ଓ ବାସ୍ତବଧର୍ମୀ ଭିନ୍ନ ଭିନ୍ନ ସ୍ୱାଦର ଲେଖା ଲେଖିବାରେ ସେ ଧୂରୀଣ । ସଦ୍ୟ ପ୍ରକାଶିତ କବିତା ସଂକଳନ **'ଶ୍ରୁତି ସଂଜୀବନୀ'** ତାଂକର ଏକ ସଫଳ, ସାର୍ଥକ ଓ ଅନନ୍ୟ ସୃଷ୍ଟି । ଏଥିରେ ସନ୍ନିବେଶିତ ପ୍ରତ୍ୟେକଟି କବିତା ପଥଭ୍ରଷ୍ଟ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବା ସଂଗେସଂଗେ ସତ୍ୟପଥରେ ଅନୁଗାମୀ କରାଇବାକୁ ପ୍ରେରଣା ଯୋଗାଇବ ଏହା ନିଃସନ୍ଦେହ ।

ବୃତ୍ତିରେ ଅଧ୍ୟାପକ ଡ. ଦାଶ ଦୀର୍ଘ ୩୫ବର୍ଷର ଅଧ୍ୟାପନା ପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟର ଅଧକ୍ଷ ପଦରୁ ଅବସର ନେଇଛନ୍ତି ।

ପାଠକ ମହଲରେ ସଂକଳନଟି ଆଦୃତ ହେବବୋଲି ଆଶା ଓ ବିଶ୍ୱାସ ।

- ପ୍ରକାଶକ




A Compilation of poetry by
Dr. Gobinda Chandra Dash
Athena Books
Bhubaneswar-2
rkdas.athena@gmail.com
Rs.150/-

ISBN : 13 978-93-80824-47-5